ପ୍ରକାଶକ : ଶ୍ରୀ ଅଜିତ୍ ସି. ପଟେଲ
ଦାଦା ଭଗବାନ ଆରାଧନା ଟ୍ରଷ୍ଟ
୫, ମମତା ପାର୍କ ସୋସାଇଟୀ, ନବଗୁଜରାଟ
କଲେଜ ପଛ, ଉସ୍ମାନପୁରା,
ଅହମଦାବାଦ୍-୩୮୦୦୧୪, ଗୁଜରାଟ
ଫୋନ୍ : (୦୭୯) ୩୯୮୩୦୧୦୦



ପ୍ରଥମ ସଂସ୍କରଣ : ବହି ସଂଖ୍ୟା ୧୦୦୦ ନଭେମ୍ବର ୨୦୧୮

ଭାବ ମୂଲ୍ୟ : 'ପରମ ବିନୟ' ଏବଂ
'ମୁଁ କିଛି ମଧ୍ୟ ଜାଣି ନାହିଁ', ଏହି ଭାବ !

ଦ୍ରବ୍ୟ ମୂଲ୍ୟ : ୪୦ ଟଙ୍କା

ମୁଦ୍ରକ : ଅମ୍ବା ଅଫ୍‌ସେଟ୍
B-99, ଇଲେକ୍ଟ୍ରୋନିକ୍ସ G.I.D.C, K-6 ରୋଡ୍,
ସେକ୍ଟର-୨୫, ଗାନ୍ଧୀନଗର - ୩୮୨୦୪୪
ଫୋନ୍ : (୦୭୯) ୩୯୮୩୦୩୪୧/୪୨

# ତ୍ରିମନ୍ତ୍ର







ନମୋ ଅରିହଂତାଣଂ

ନମୋ ସିଦ୍ଧାଣଂ

ନମୋ ଆୟରିୟାଣଂ

ନମୋ ଉବଜ୍ଝାୟାଣଂ

ନମୋ ଲୋଏ ସବ୍ବସାହୁଣଂ

ଏସୋ ପଞ୍ଚ  ନମୁକ୍କାରୋ,

ସବ୍ବ ପାବପ୍ପଣାସଣୋ

ମଙ୍ଗଲାଣଂ ଚ ସବ୍ବେସିଂ,

ପଢମଂ ହବଇ ମଙ୍ଗଲମ୍ ।।୧ ।।

ॐ ନମୋ ଭଗବତେ ବାସୁଦେବାୟ ।।୨।।

ॐ ନମଃ ଶିବାୟ ।। ୩ ।।

।। ଜୟ ସଚ୍ଚିଦାନନ୍ଦ ।।



# ସମର୍ପଣ

ଅନାଦି କାଳୁ, ମା-ବାପା ପିଲାଙ୍କ ବ୍ୟବହାର,
ରାଗ୍-ଦ୍ୱେଷର ବନ୍ଧନ ଏବଂ ମମତାର ପ୍ରହାର ।
ନା କହିପାରନ୍ତି, ନା ସହିପାରନ୍ତି, ଯିବେ ତ ଯିବେ କେଉଁଠି
କାହାକୁ ପଚାରିବେ, କିଏ ବତାଇବ ଉପାୟ ଏଠି ?
ଫଶିଥିଲେ ରାମ, ଦଶରଥ ଏବଂ ଶ୍ରେଣୀକ
ଶ୍ରବଣର ମୃତ୍ୟୁରେ ଶୁଭିଥିଲା ଚିତ୍କାର ମା-ବାପାଙ୍କ ।
ବିବାହ ପରେ ପଚାରେ ‘ଗୁରୁ’ ପତ୍ନୀକୁ ବାରମ୍ବାର
ଏହି ତ୍ରିକୋଣରେ କ’ଣ କରିବି, ବତାଅ ତାରଣହାର !
ଆଜିକା ପିଲା ଫଶିଲେ ମା-ବାପାଙ୍କ ଯୋଗୁ
ବଡ଼ ଅନ୍ତର ପଡ଼ିଲା ‘ଜେନେରେଶନ୍ ଗ୍ୟାପ୍’ ଯୋଗୁ ।
ଅଛି ମୋକ୍ଷର ଧ୍ୟେୟ, କରିବାକୁ ହେବ ସଂସାର ପାରି
ନାଆ ଅଛି ମଝିଧାରେ, କିଏ ହେବ ନାଉରୀ ?
ଏପର୍ଯ୍ୟନ୍ତର ଜ୍ଞାନୀମାନେ, ବତାଇଲେ ଏକମାତ୍ର ରାସ୍ତା ବୈରାଗ
ସଂସାରୀ ପଡ଼ିଲେ ଚିନ୍ତାରେ, କେମିତି ହେବା ବୀତରାଗ ?
ଦେଖାଇଲେ ନାହିଁ କେହି ବି ସଂସାର ସହ ମୋକ୍ଷମାର୍ଗ
କଳିକାଳର ଆଶ୍ଚର୍ଯ୍ୟ, ‘ଦାଦା’ ଦେଲେ ଅକ୍ରମମାର୍ଗ !
ସଂସାରରେ ରହି ମଧ୍ୟ, ହୋଇପାରିବା ବୀତରାଗ
ନିଜେ ଏପରି ହୋଇ ଦାଦା, ପ୍ରଜ୍ୱଳିତ କଲେ ଚିରାଗ ।
ସେହି ଚିରାଗ ର ପ୍ରକାଶରେ ମୋକ୍ଷ ପାଏ ମୁମୁକ୍ଷୁ
ପ୍ରକୃତ ଖୋଜିବାବାଲା ପାଏ ଏଠି, ନିଶ୍ଚିତ ଦିବ୍ୟଚକ୍ଷୁ ।
ସେହି ପ୍ରକାଶର କିରଣ, ପ୍ରକାଶିତ ଏହି ଗ୍ରନ୍ଥରେ
ମାତା-ପିତା ପିଲାଙ୍କ ବ୍ୟବହାରର ସମାଧାନ ହୁଏ ଅଚିରେ ।
ଦୀପରୁ ଦୀପ ପ୍ରଜ୍ୱଳିତ, ପ୍ରତ୍ୟେକଙ୍କ ଘଟ-ଘଟରେ
ଜଗତକୁ ସମର୍ପିତ ଏହି ଗ୍ରନ୍ଥ, ପ୍ରାପ୍ତ କର ଏବେ ମୁଠିରେ ।



# ‘ଦାଦା ଭଗବାନ’ କିଏ ?

ଜୁନ୍ ୧୯୫୮ରେ ଏକ ସନ୍ଧ୍ୟା, ସମୟ ପାଖାପାଖି ଛ’ଟା, ଭିଡ଼ରେ ଭରା ସୁରଟ ସହରର ରେଲୱେ ଷ୍ଟେସନ୍, ପ୍ଲାଟ୍‌ଫର୍ମ ନମ୍ବର ୩ର ବେଞ୍ଚ ଉପରେ ବସିଥିବା ଶ୍ରୀ ଅମ୍ବାଲାଲ୍ ମୁଲ୍‌ଜୀଭାଇ ପଟେଲ୍ ରୂପୀ ଦେହମନ୍ଦିରରେ ପ୍ରାକୃତିକ ରୀତିରେ, ଅକ୍ରମ ରୂପରେ, କେତେ ଜନ୍ମରୁ ବ୍ୟକ୍ତ ହେବାପାଇଁ ଆତୁର ‘ଦାଦା ଭଗବାନ’ ପୂର୍ଣ୍ଣ ରୂପରେ ପ୍ରକଟ ହେଲେ । ଏବଂ ପ୍ରକୃତି ସର୍ଜିତ କଲା ଅଧ୍ୟାତ୍ମର ଅଦ୍ଭୁତ ଆଶ୍ଚର୍ଯ୍ୟ । ଏକ ଘଣ୍ଟାରେ ତାଙ୍କୁ ବିଶ୍ୱ ଦର୍ଶନ ହେଲା । ‘ମୁଁ କିଏ ? ଭଗବାନ କିଏ ? ଜଗତ କିଏ ଚଲାଉଛି ? କର୍ମ କ’ଣ ? ମୁକ୍ତି କ’ଣ ?’ ଇତ୍ୟାଦି ଜଗତର ସମସ୍ତ ଆଧ୍ୟାତ୍ମିକ ପ୍ରଶ୍ନର ସଂପୂର୍ଣ୍ଣ ରହସ୍ୟ ପ୍ରକଟ ହେଲା । ଏହିପରି ପ୍ରକୃତି, ବିଶ୍ୱ ସମ୍ମୁଖରେ ଏକ ଅଦ୍ୱିତୀୟ ପୂର୍ଣ୍ଣ ଦର୍ଶନ ପ୍ରସ୍ତୁତ କଲା ଏବଂ ତାହାର ମାଧ୍ୟମ ହେଲେ ଶ୍ରୀ ଅମ୍ବାଲାଲ୍ ମୂଲ୍‌ଜୀଭାଇ ପଟେଲ, ଯିଏ ଗୁଜରାଟର ଚରୋତର କ୍ଷେତ୍ରର ଭାଦରଣ ଗାଁ’ର ପାଟୀଦାର, କଣ୍ଟ୍ରାକ୍ଟ ବ୍ୟବସାୟ କରିବାବାଲା, ତଥାପି ପୂର୍ଣ୍ଣ ରୂପରେ ବୀତରାଗ ପୁରୁଷ !

‘ବ୍ୟାପାରରେ ଧର୍ମ ରହିବା ଉଚିତ୍, ଧର୍ମରେ ବ୍ୟାପାର ନୁହେଁ’, ଏହି ସିଦ୍ଧାନ୍ତ ସହ ସେ ସାରା ଜୀବନ ବିତାଇଲେ । ଜୀବନରେ କେବେ ମଧ୍ୟ ସେ କାହାରିଠାରୁ ପଇସା ନେଇ ନାହାନ୍ତି, ବରଂ ନିଜ ରୋଜଗାରରୁ ଭକ୍ତମାନଙ୍କୁ ଯାତ୍ରା କରାଉଥିଲେ ।

ତାଙ୍କୁ ଯେପରି ପ୍ରାପ୍ତ ହେଲା, ସେହିପରି କେବଳ ଦୁଇ ଘଣ୍ଟାରେ ଅନ୍ୟ ମୁମୁକ୍ଷୁମାନଙ୍କୁ ମଧ୍ୟ ସେ ଆତ୍ମଜ୍ଞାନର ପ୍ରାପ୍ତି କରାଉଥିଲେ, ତାଙ୍କର ଅଦ୍ଭୁତ ସିଦ୍ଧ ହୋଇଥିବା ଜ୍ଞାନ ପ୍ରୟୋଗ ଦ୍ୱାରା । ତାହାକୁ ଅକ୍ରମ ମାର୍ଗ କହିଲେ । ଅକ୍ରମ, ଅର୍ଥାତ୍ ବିନା କ୍ରମରେ ଏବଂ କ୍ରମ ଅର୍ଥାତ୍ ସିଢ଼ି ପରେ ସିଢ଼ି, କ୍ରମାନୁସାରେ ଉପରକୁ ଚଢ଼ିବା । ଅକ୍ରମ ଅର୍ଥାତ୍ ଲିଫ୍ଟ ମାର୍ଗ, ସର୍ଟ କଟ୍ ।

ସେ ନିଜେ ପ୍ରତ୍ୟେକଙ୍କୁ ‘ଦାଦା ଭଗବାନ କିଏ ?’ର ରହସ୍ୟ ବତାଇବାକୁ ଯାଇ କହୁଥିଲେ ଯେ, ‘‘ଏ ଯିଏ ଆପଣଙ୍କୁ ଦେଖାଯାଉଛନ୍ତି ସେ ଦାଦା ଭଗବାନ ନୁହଁନ୍ତି, ସେ ତ ‘ଏ.ଏମ୍. ପଟେଲ୍’ ଅଟେ । ମୁଁ ଜ୍ଞାନୀପୁରୁଷ ଅଟେ ଏବଂ ଭିତରେ ଯିଏ ପ୍ରକଟ ହୋଇଛନ୍ତି, ସେ ‘ଦାଦା ଭଗବାନ’ ଅଟନ୍ତି । ଦାଦା ଭଗବାନ ତ’ ଚଉଦ ଲୋକର ନାଥ ଅଟନ୍ତି । ସେ ଆପଣଙ୍କ ଭିତରେ ମଧ୍ୟ ଅଛନ୍ତି, ସମସ୍ତଙ୍କ ଭିତରେ ଅଛନ୍ତି । ଆପଣଙ୍କ ଭିତରେ ଅବ୍ୟକ୍ତ ରୂପରେ ଅଛନ୍ତି ଏବଂ ‘ଏଠାରେ’ ମୋ ଭିତରେ ସଂପୂର୍ଣ୍ଣ ରୂପରେ ବ୍ୟକ୍ତ ହୋଇଛନ୍ତି । ଦାଦା ଭଗବାନଙ୍କୁ ମୁଁ ମଧ୍ୟ ନମସ୍କାର କରେ ।’’

## ଆତ୍ମଜ୍ଞାନ ପ୍ରାପ୍ତି ପାଇଁ ପ୍ରତ୍ୟକ୍ଷ ଲିଙ୍କ୍

"ମୁଁ ତ କିଛି ଲୋକଙ୍କୁ ନିଜ ହାତରେ ସିଦ୍ଧି ପ୍ରଦାନ କରିବି । ପରେ ଅନୁଗାମୀ ଦରକାର କି ନାହିଁ ? ପରେ ଲୋକଙ୍କୁ ମାର୍ଗ ତ ଦରକାର ନା ?"

**- ଦାଦାଶ୍ରୀ**

ପରମ ପୂଜ୍ୟ ଦାଦାଶ୍ରୀ ଗାଁ'-ଗାଁ', ଦେଶ-ବିଦେଶ ପରିଭ୍ରମଣ କରି ମୁମୁକ୍ଷୁମାନଙ୍କୁ ସତ୍‌ସଙ୍ଗ ଏବଂ ଆତ୍ମଜ୍ଞାନର ପ୍ରାପ୍ତି କରାଉଥିଲେ । ସେ ନିଜର ଜୀବନକାଳ ମଧ୍ୟରେ ପୂଜ୍ୟ ଡା. ନୀରୂବେନ ଅମୀନ(ନୀରୂମାଁ)ଙ୍କୁ ଆତ୍ମଜ୍ଞାନ ପ୍ରାପ୍ତି କରାଇବାର ଜ୍ଞାନସିଦ୍ଧି ପ୍ରଦାନ କରିଥିଲେ । ଦାଦାଶ୍ରୀଙ୍କ ଦେହବିଲୟ ପରେ ନୀରୂମା ସେହିପରି ମୁମୁକ୍ଷୁମାନଙ୍କୁ ସତ୍‌ସଙ୍ଗ ଏବଂ ଆତ୍ମଜ୍ଞାନର ପ୍ରାପ୍ତି, ନିମିତ୍ତ ଭାବରେ କରାଉଥିଲେ । ପୂଜ୍ୟ ଦୀପକଭାଈ ଦେଶାଈଙ୍କୁ ଦାଦାଶ୍ରୀ ସତ୍‌ସଙ୍ଗ କରିବା ପାଇଁ ସିଦ୍ଧି ପ୍ରଦାନ କରିଥିଲେ । ନୀରୂମାଁଙ୍କ ଉପସ୍ଥିତିରେ ହିଁ ତାଙ୍କର ଆଶୀର୍ବାଦ ଦ୍ଵାରା ପୂଜ୍ୟ ଦୀପକଭାଇ ଦେଶ-ବିଦେଶରେ ଅନେକ ଜାଗାକୁ ଯାଇ ମୁମୁକ୍ଷୁମାନଙ୍କୁ ଆତ୍ମଜ୍ଞାନ ପ୍ରାପ୍ତି କରାଉଥିଲେ, ଯାହା ନୀରୂମାଙ୍କ ଦେହବିଲୟ ପରେ ଆଜି ମଧ୍ୟ ଚାଲୁଅଛି । ଏହି ଆତ୍ମଜ୍ଞାନ ପ୍ରାପ୍ତି ପରେ ହଜାର ହଜାର ମୁମୁକ୍ଷୁ ସଂସାରରେ ରହି, ନିଜର ସାଂସାରିକ ଦାୟିତ୍ଵ ବହନ କରି ମଧ୍ୟ ମୁକ୍ତ ରହି ଆତ୍ମରମଣତାର ଅନୁଭବ କରୁଛନ୍ତି ।

ଗ୍ରନ୍ଥରେ ମୁଦ୍ରିତ ବାଣୀ ମୋକ୍ଷାର୍ଥୀମାନଙ୍କୁ ମାର୍ଗଦର୍ଶନ ପାଇଁ ଅତ୍ୟନ୍ତ ଉପଯୋଗୀ ସିଦ୍ଧ ହେବ, କିନ୍ତୁ ମୋକ୍ଷପ୍ରାପ୍ତି ପାଇଁ ଆତ୍ମଜ୍ଞାନ ପ୍ରାପ୍ତ କରିବା ଆବଶ୍ୟକ ଅଟେ । ଅକ୍ରମ ମାର୍ଗ ଦ୍ଵାରା ଆତ୍ମଜ୍ଞାନ ପ୍ରାପ୍ତିର ମାର୍ଗ ଆଜି ମଧ୍ୟ ଖୋଲାଅଛି । ଯେପରି ପ୍ରଜ୍ଵଳିତ ଦୀପ ହିଁ ଅନ୍ୟ ଦୀପକୁ ପ୍ରଜ୍ଵଳିତ କରିପାରେ, ସେହିପରି ପ୍ରତ୍ୟକ୍ଷ ଆତ୍ମଜ୍ଞାନୀଙ୍କଠାରୁ ଆତ୍ମଜ୍ଞାନ ପ୍ରାପ୍ତ କରି ହିଁ ସ୍ଵୟଂର ଆତ୍ମା ଜାଗୃତ ହୋଇପାରେ ।

# ନିବେଦନ

ଆତ୍ମବିଜ୍ଞାନୀ ଶ୍ରୀ ଅମ୍ବାଲାଲ ମୂଳ୍‌ଜୀଭାଇ ପଟେଲ, ଯାହାଙ୍କୁ ଲୋକେ 'ଦାଦା ଭଗବାନ' ନାମରେ ମଧ୍ୟ ଜାଣନ୍ତି, ତାଙ୍କ ଶ୍ରୀମୁଖରୁ ଅଧ୍ୟାତ୍ମ ତଥା ବ୍ୟବହାର ଜ୍ଞାନ ସମ୍ବନ୍ଧୀ ଯେଉଁ ବାଣୀ ବାହାରିଛି, ସେସବୁକୁ ରେକର୍ଡ଼ କରି, ସଙ୍କଳନ ତଥା ସମ୍ପାଦନ କରି ପୁସ୍ତକ ରୂପରେ ପ୍ରକାଶିତ କରାଯାଉଛି ।

ମାତା-ପିତା ଏବଂ ପିଲାଙ୍କ ମଧ୍ୟରେ ବର୍ତ୍ତମାନର ଉତ୍ତେଜନାପୂର୍ବକ ବ୍ୟବହାରକୁ ସହଜତା ପ୍ରଦାନ କରିବା ହେତୁ, ସଂପୂଜ୍ୟ ସର୍ବଜ୍ଞ ଦାଦାଶ୍ରୀଙ୍କ ପାଖକୁ ଆସିଥିବା ମୁମୁକ୍ଷୁମାନଙ୍କୁ ଯେଉଁ ମାର୍ଗଦର୍ଶନ ମିଳିଲା ତାହାର ସଙ୍କଳନ, ଜଗତକଲ୍ୟାଣ ପାଇଁ, ଏହି ସଂକ୍ଷିପ୍ତ ଗ୍ରନ୍ଥରେ କରାଯାଇଛି । ଦାଦାଶ୍ରୀ ଯାହା କିଛି କହିଲେ, ଚରୋତରୀ ଗ୍ରାମୀଣ ଗୁଜରାଟୀ ଭାଷାରେ କହିଲେ । ତାହାକୁ ଓଡ଼ିଆ ଭାଷୀ ମୁମୁକ୍ଷୁଙ୍କ ପାଖକୁ ପହଞ୍ଚାଇବାର ଏହା ଯଥାମତି, ଯଥାଶକ୍ତି ନୈମିତ୍ତିକ ପ୍ରୟତ୍ନ ।

'ଜ୍ଞାନୀପୁରୁଷ'ଙ୍କ ଯେଉଁ ଶବ୍ଦ, ତାହା ଭାଷାକୀୟ ଦୃଷ୍ଟିରେ ସାଦାସିଧା ଅଟେ, କିନ୍ତୁ ଜ୍ଞାନୀପୁରୁଷଙ୍କ ଦର୍ଶନ ନିରାବରଣ ଅଟେ, ସେଥିପାଇଁ ତାଙ୍କର ପ୍ରତ୍ୟେକ ବଚନ ଆଶୟପୂର୍ଣ୍ଣ, ମାର୍ମିକ, ମୌଳିକ ଏବଂ ସାମ୍ନାବ୍ୟକ୍ତିର ଭ୍ୟୁ-ପଏଣ୍ଟ୍‌କୁ ଏକ୍‌ଜାକ୍ଟ(ଯଥାର୍ଥ) ରୂପେ ବୁଝି ବାହାରିବା କାରଣରୁ ଶ୍ରୋତାର ଦର୍ଶନକୁ ସୁସ୍ପଷ୍ଟ ଖୋଲିଦିଏ ଏବଂ ଅଧିକ ଉଚ୍ଚସ୍ତରକୁ ନେଇଯାଏ ।

ଜ୍ଞାନୀଙ୍କ ବାଣୀକୁ ଓଡ଼ିଆ ଭାଷାରେ ଯଥାର୍ଥ ରୂପେ ଅନୁବାଦିତ କରିବାର ପ୍ରୟତ୍ନ କରାଯାଇଛି କିନ୍ତୁ ଦାଦାଶ୍ରୀଙ୍କ ଆତ୍ମଜ୍ଞାନର ପ୍ରକୃତ ଆଶୟ, ଯେମିତିକୁ ସେମିତି(as it is), ଆପଣଙ୍କୁ ଗୁଜରାଟୀ ଭାଷାରେ ହିଁ ଅବଗତ ହେବ । ଯାହାଙ୍କୁ ଜ୍ଞାନର ଗଭୀରତାକୁ ଯିବାର ଅଛି, ଜ୍ଞାନର ପ୍ରକୃତ ମର୍ମ ବୁଝିବାର ଅଛି, ସେମାନେ ଏଥିପାଇଁ ଗୁଜରାଟୀ ଭାଷା ଶିଖନ୍ତୁ, ଏହା ଆମର ଅନୁରୋଧ ।

ପ୍ରସ୍ତୁତ ପୁସ୍ତକରେ ଅନେକ ଜାଗାରେ ବନ୍ଧନୀରେ ଦର୍ଶାଯାଇଥିବା ଶବ୍ଦ ବା ବାକ୍ୟ ପରମପୂଜ୍ୟ ଦାଦାଶ୍ରୀଙ୍କ ଦ୍ୱାରା କୁହାଯାଇଥିବା ବାକ୍ୟକୁ ଅଧିକ ସ୍ପଷ୍ଟତାପୂର୍ବକ ବୁଝାଇବା ହେତୁ ଲେଖାଯାଇଛି । ଯେବେକି କିଛି ଜାଗାରେ ଇଂରାଜୀ ଶବ୍ଦକୁ ଓଡ଼ିଆ ଅର୍ଥରୂପରେ ରଖାଯାଇଛି । ଦାଦାଶ୍ରୀଙ୍କ ଶ୍ରୀମୁଖରୁ ବାହାରିଥିବା କିଛି ଗୁଜରାଟୀ ଶବ୍ଦ ଯେମିତିକୁ ସେମିତି ରଖାଯାଇଛି, କାରଣ ସେ ଶବ୍ଦଗୁଡ଼ିକ ପାଇଁ ଓଡ଼ିଆରେ ଏପରି କିଛି ଶବ୍ଦ ନାହିଁ, ଯାହା ତାହାର ପୂର୍ଣ୍ଣ ଅର୍ଥ ଦେଇପାରିବ । ପରନ୍ତୁ ସେ ଶବ୍ଦର ସମାନାର୍ଥି ଶବ୍ଦ ଅର୍ଥ ରୂପରେ ଦିଆଯାଇଛି ।

ଅନୁବାଦ ଜନିତ ତ୍ରୁଟି ପାଇଁ ଆପଣଙ୍କ ପାଖରେ କ୍ଷମାପ୍ରାର୍ଥୀ ଅଟୁ ।

# ପ୍ରସ୍ତାବନା

ମାତା-ପିତା ଏବଂ ପିଲାଙ୍କ ହେଲା ବ୍ୟବହାର,
ଅନନ୍ତ କାଳରୁ, ତଥାପି ହେଲା ନାହିଁ ପାର ।
‘ମୁଁ ପାଳିଲି, ପଢ଼ାଇଲି’ ନା କହିପାରିବା;
‘ତୁମକୁ କିଏ ପଢ଼େଇଥିଲା ?’ ତେବେ କ’ଣ କହିବା ?

ଅନିବାର୍ଯ୍ୟ ଅଟେ କର୍ତ୍ତବ୍ୟ ପିଲାଙ୍କ ପ୍ରତି ସବୁ;
କରିଥିଲେ ପିତାଶ୍ରୀ ତୁମର ବି ସବୁ ।
ଖାଲିରେ ଗାଳି-ଧମକାଇ, ଦେବ ନାହିଁ ସନ୍ତାପ;
ବଡ଼ ହୋଇ ଏ ପିଲାମାନେ ଦେବେ ଦ୍ୱିଗୁଣା ତାପ !

ମୋ ପିଲା ଏମିତି ହୁଅନ୍ତୁ, ଏପରି ସର୍ବଦା ଚାହାନ୍ତି;
ନିଜେ ଦୁହେଁ କିପରି ଝଗଡ଼ନ୍ତି, ଏହା କେବେ ନ ଭାବନ୍ତି ।
ମା ମୂଳା ଏବଂ ବାପ ହୋଇଥିବ ଗାଜର !
ପିଲାମାନେ ସେଓ କେମିତି ହେବେ ପ୍ରପର୍ ?

ଗୋଟିଏ ପିଲାର ଲାଳନପାଳନର ଦାୟିତ୍ୱ;
ଅଟେ ଭାରତର ପ୍ରଧାନମନ୍ତ୍ରୀଠୁ ବି ଅଧିକ ।
ତୋ ଠୁ ଅଧିକ ମୁଁ ଦେଖିଛି ଦିବାଳି;
ପିଲା କୁହନ୍ତି, ‘ତୁମେ ଦୀପ ମାଟିର, ଆମେ ଅଟୁ ବିଜୁଳି !’

ମାତା-ପିତାଙ୍କ ଝଗଡ଼ା, ବିଗାଡ଼େ ବାଳ ମନ,
ମାନେ ସେମାନଙ୍କୁ ବୋଗସ୍, ହୁଏ ବନ୍ଧନ !
ଗାଳିକଲେ ସୁଧରନ୍ତି ନାହିଁ ପିଲାମାନେ କେବେବି,
ପ୍ରେମରୁ ହିଁ ପ୍ରକାଶମାନ ଏକବିଂଶ ଶତାବ୍ଦି ।

ମାରିଲେ-ଗାଳିକଲେ ମଧ୍ୟ କମେ ନାହିଁ ପ୍ରେମ ଯେଉଁଠି,
ପ୍ରେମର ପ୍ରଭାବରୁ ପିଲା ବନନ୍ତି ମହାବୀର ସେଠି ।
ନୂଆ ପିଢ଼ି ଅଟେ ହେଲଦି ମାଇଣ୍ଡବାଲା;
ଭୋଗବାଦୀ ତ ଅଟେ, କିନ୍ତୁ ନୁହେଁ କଷାୟବାଲା ।

ରାଗର ମାଡ଼କୁ ବାଳକ ନ ଭୁଲିବେ;
ବାପଠୁ ବି ଶହେଗୁଣା ରାଗୀ ବନିବେ ।

ଘରେ-ଘରେ ପ୍ରାକୃତିକ କ୍ଷେତ ଥିଲା ସତ୍ୟଯୁଗରେ;
ଭିନ୍ନ ଭିନ୍ନ ଫୁଲର ବଗିଚା ଅଟେ କଳିଯୁଗରେ ।

ସଠିକ ମାଳି ହୋଇବ ତେବେ, ବଗିଚା ଏ ସୁନ୍ଦର ସଜିବ;
ନଚେତ ବିଗିଡ଼ିଯାଇ କଷାୟକୁ ଭଜିବ ।

କରିବ ନାହିଁ କେବେବି ଝିଅ ଉପରେ ଶଙ୍କା,
ନହେଲେ ଶୁଣିବାକୁ ପଡ଼ିବ ବରବାଦି ର ଡଙ୍କା ।

ଉତ୍ତରାଧିକାରରେ ପିଲାଙ୍କୁ ଦେବା କେତେ ?
ଆମ ବାପାଙ୍କଠୁ ମିଳିଥିବ ଆମକୁ ଯେତେ ।

ବେକାର ଖର୍ଚ୍ଚ ହେବ ଯଦି ଦେବ ଅଧିକା
ହୋଇ ମଦୁଆ ଭୁଲିଯିବ ମର୍ଯ୍ୟାଦା ।

କରିବ ପିଲାଙ୍କ ଉପରେ ରାଗ୍ ଯେତିକି,
ବଦଳରେ ହେବ ପୁଣି ଦ୍ୱେଷ ସେତିକି !

ରାଗ-ଦ୍ୱେଷରୁ ମୁକ୍ତି ପାଇଁ ହୋଇଯାଅ ବୀତରାଗ
ଭବପାରି କରିବାର ବାସ୍ ଏହି ଗୋଟିଏ ମାର୍ଗ !

ମୋକ୍ଷ ହେତୁ ନିଃସନ୍ତାନ ହେବା ମହା ପୁଣ୍ୟଶାଳୀ
କୋଳ ନୁହେଁ ଖାଲି କିନ୍ତୁ ଅଟେ ଖାତା ଖାଲି !

କେଉଁ ଜନ୍ମରେ ହୋଇନଥିଲେ ବଚ୍ଚା ?
ଏବେ ତ ଶାନ୍ତ ହୁଅ, ହୁଅ ମୁମୁକ୍ଷୁ ସଚ୍ଚା ।

ମାତା-ପିତା ସନ୍ତାନଙ୍କ ସମ୍ବନ୍ଧ ଅଟେ ସଂସାରୀ
ଉତ୍ତରାଧିକାରରେ ଦେଲେ ନାହିଁ କିଛି, ଆସିଲା କୋର୍ଟର ପାଳି ।

କେବଳ ଦୁଇ ଘଣ୍ଟା ଗାଳି କରିବ, ତେବେ ଭାଙ୍ଗେ ଏ ସମ୍ବନ୍ଧ !
ଏହା ତ ଅଟେ କେବଳ ଶ୍ମଶାନ ଯାଏଁ ସମ୍ବନ୍ଧ !

ନିଜ ନଜରରେ ହୁଅନ୍ତି ନାହିଁ ପିଲାମାନେ କେବେବି ଏକ ସମାନ
ରାଗ-ଦ୍ୱେଷର ବନ୍ଧନର ଏହା ଅଟେ କେବଳ ଆଦାନ-ପ୍ରଦାନ ।

ଆତ୍ମା ବ୍ୟତୀତ ସଂସାରରେ କେହି ନୁହେଁ ନିଜର,
ବିନ୍ଧେ ଗୋଡ଼ ଏବଂ ଦାନ୍ତ, ହିସାବ ନିଜ ନିଜର ।

ହିସାବ ସୁଝିବାରେ ଜୋଶ୍ ନ ହେଉ ମାନ୍ଦା,
ବୁଝିବିଚାରି ସୁଝିଦିଅ, ନହେଲେ ଅଟେ ଫାଶୀର ଫନ୍ଦା !

କୁହନ୍ତି, ମା ପାଇଁ ପିଲାମାନେ ସବୁ ସମାନ;
ହୁଏ କିନ୍ତୁ ରାଗ-ଦ୍ୱେଷ, ହିସାବର ଆଦାନ-ପ୍ରଦାନ ।

ମାତା-ପିତା ଏକ, କିନ୍ତୁ ପିଲା ଅଲଗା-ଅଲଗା;
ବର୍ଷା ତ ଅଟେ ସମାନ, କିନ୍ତୁ ବୀଜ ଅନୁସାରେ ଫସଲ ।

ପ୍ରକୃତିର ନିୟମାନୁସାରେ ଏକ ପରିବାରରେ ମିଳନ;
ସମାନ ପରମାଣୁ ହିଁ ଆକର୍ଷିତ ହୁଏ ମନକୁ ମନ !

ମିଳେ ଦ୍ରବ୍ୟ-କ୍ଷେତ୍ର-କାଳ ଏବଂ ଭାବ
ଘଟେ ଘଟଣା 'ବ୍ୟବସ୍ଥିତ'ର ଏହା ସ୍ୱଭାବ !

ଶ୍ରେଣୀକ ରାଜାଙ୍କୁ ପୁଅ ହିଁ ଭର୍ତ୍ତି କଲା ଜେଲରେ
ପୁଅର ଡରରେ ହିରା ଚୁଚୁମି ମଲେ ସେ !

ଆତ୍ମାର କେହି ନାହିଁ ପୁତ୍ର ଏଠି
ଛାଡ଼ି ସବୁ ମାୟା ପରଭବ ସୁଧାର ଏଠି !



# ସମ୍ପାଦକୀୟ

କେଉଁ ଜନ୍ମରେ ପିଲା ହୋଇନାହାନ୍ତି ? ମାତା-ପିତାଙ୍କ ବିନା କାହାର ଅସ୍ତିତ୍ୱ ସମ୍ଭବ ? ସବୁ ଭଗବାନ ମା'ର ପେଟରୁ ହିଁ ଜନ୍ମିଥିଲେ ! ଏହିପରି, ମାତା-ପିତା ଏବଂ ପିଲାଙ୍କ ବ୍ୟବହାର ଅନାଦି ଅନନ୍ତ ଅଟେ । ଏହି ବ୍ୟବହାର ଆଦର୍ଶ କିପରି ହେବ, ସେଥିପାଇଁ ସମସ୍ତେ ଦିନ-ରାତି ପ୍ରୟାସ କରୁଥିବାର ଦେଖାଯାଏ । ଆଉ ଏହି କଳିଯୁଗରେ ତ କଥା କଥାରେ ମାତା-ପିତା ଏବଂ ପିଲାଙ୍କ ମଧ୍ୟରେ ଯେଉଁ ମତଭେଦ ଦେଖିବାକୁ ମିଳେ, ତାହା ସବୁ ଦେଖି ଲୋକେ ବିବ୍ରତ ହୋଇଯାନ୍ତି । ସତ୍ୟଯୁଗରେ ବି ଭଗବାନ ରାମ ଏବଂ ଲବ-କୁଶଙ୍କ ବ୍ୟବହାର କିପରି ଥିଲା ? ଋଷଭଦେବ ଭଗବାନଙ୍କଠାରୁ ଅଲଗା ସମ୍ପ୍ରଦାୟ ଚଲାଇବାବାଲା ମରୀଚି ବି ତ ଥିଲେ । ଧୃତରାଷ୍ଟ୍ରଙ୍କ ମମତା ଏବଂ ଦୁର୍ଯୋଧନର ସ୍ୱଚ୍ଛନ୍ଦତା କ'ଣ ଅଜଣା ଅଟେ ? ଭଗବାନ ମହାବୀରଙ୍କ ସମୟରେ ଶ୍ରେଣୀକ ରାଜା ଏବଂ ପୁତ୍ର କୋଣିକ ମୋଗଲମାନଙ୍କର ସ୍ମରଣ କରାନ୍ତି ନାହିଁ କି ?! ମୋଗଲ ବାଦଶାହା ଜଗପ୍ରସିଦ୍ଧ ହେଲେ, ସେମାନଙ୍କ ମଧ୍ୟରୁ ଗୋଟିଏ ପଟେ ବାବର ଥିଲେ, ଯିଏ ହୁମାୟୁନର ଜୀବନ ସକାଶେ, ବଦଳରେ ନିଜ ଜୀବନ ଦେବାପାଇଁ ଆଲ୍ଲାହଙ୍କୁ ପ୍ରାର୍ଥନା କରିଥିଲେ, ତେବେ ଅନ୍ୟ ପଟେ ସାହାଜାହାନଙ୍କୁ ବନ୍ଦୀକରି ଔରଙ୍ଗଜେବ ଗାଦିଶୀନ ହୋଇଥିଲେ । ଭଗବାନ ରାମ ପିତାଙ୍କ କାରଣରୁ ହିଁ ବନବାସ ଯାଇଥିଲେ । ଶ୍ରବଣ, ମାତା-ପିତାଙ୍କୁ ବାହୁଙ୍ଗିରେ ବସାଇ ଯାତ୍ରା କରାଇଥିଲା(ମୁଖପୃଷ୍ଠ) । ଏହିପରି ରାଗ(ଆସକ୍ତି)-ଦ୍ୱେଷ ମଧ୍ୟରେ ଝୁଲୁଥିବା ମାତା-ପିତା ଏବଂ ପିଲାଙ୍କ ବ୍ୟବହାର ପ୍ରତ୍ୟେକ କାଳରେ ହୁଏ । ବର୍ତ୍ତମାନ ଦ୍ୱେଷର ବ୍ୟବହାର ବିଶେଷ ରୂପରେ ଦେଖିବାକୁ ମିଳୁଛି ।

ଏପରି କାଳରେ ସମତାରେ ରହି ଆଦର୍ଶ ବ୍ୟବହାର ଦ୍ୱାରା ମୁକ୍ତ ହେବାର ରାସ୍ତା ଅକ୍ରମ ବିଜ୍ଞାନୀ ପରମପୂଜ୍ୟ ଦାଦା ଭଗବାନ (ଦାଦାଶ୍ରୀ)ଙ୍କ ବାଣୀ ଦ୍ୱାରା ଏଠାରେ ପ୍ରରୂପିତ ହୋଇଛି । ଆଜିର ଯୁବବର୍ଗର ମାନସିକତା, ସଂପୂର୍ଣ୍ଣରୂପେ ଜାଣି, ତାହାକୁ ଜିତିବାର ରାସ୍ତା ଦେଖାଇଛନ୍ତି । ବିଦେଶରେ ସ୍ଥିତ ଭାରତୀୟ ମାତା-ପିତା ଏବଂ ପିଲାମାନଙ୍କର, ଦୁଇ ଦେଶର ଭିନ୍ନ ଭିନ୍ନ ସଂସ୍କୃତି ମଧ୍ୟରେ, ଜୀବନ ଜୀଇଁବାର କଠିନ ସମସ୍ୟାର ସୁନ୍ଦର ନିରାକରଣ ପ୍ରସଙ୍ଗାନୁସାରେ କଥାବାର୍ତ୍ତା ମାଧ୍ୟମରେ ବତାଇଛନ୍ତି । ଏହି ପରାମର୍ଶ ବରିଷ୍ଠ ପାଠକଙ୍କୁ ଏବଂ ଯୁବବର୍ଗଙ୍କୁ ବହୁତ-ବହୁତ ଉପଯୋଗୀ ସିଦ୍ଧ ହେବ, ଏକ ଆଦର୍ଶ ଜୀବନ ଜୀଇଁବା ପାଇଁ ।

ପ୍ରସ୍ତୁତ ପୁସ୍ତକ ଦୁଇ ବିଭାଗରେ ସଙ୍କଳିତ ହୋଇ ପ୍ରକାଶିତ ହେଉଅଛି ।

**ପୂର୍ବାର୍ଦ୍ଧ :** ମାତା-ପିତାଙ୍କର ପିଲାଙ୍କ ପ୍ରତି ବ୍ୟବହାର

**ଉତ୍ତରାର୍ଦ୍ଧ :** ପିଲାଙ୍କର ମାତା-ପିତାଙ୍କ ପ୍ରତି ବ୍ୟବହାର

ପୂର୍ବାର୍ଦ୍ଧରେ ପରମପୂଜ୍ୟ ଦାଦାଶ୍ରୀଙ୍କର ଅନେକ ମାତା-ପିତାଙ୍କ ସହ ହୋଇଥିବା ସତ୍‌ସଙ୍ଗର ସଙ୍କଳନ ଅଛି । ମାତା-ପିତାଙ୍କର ଅନେକ ମନୋବ୍ୟଗ୍ରତା ପରମପୂଜ୍ୟ ଦାଦାଶ୍ରୀଙ୍କ ସମ୍ମୁଖରେ ଅନେକ ଥର ପ୍ରଦର୍ଶିତ ହୋଇଥିଲା । ଯାହାର ସଠିକ ସମାଧାନ ଦାଦାଶ୍ରୀ ଦେଇଛନ୍ତି ।

ଯେଉଁଥିରେ ମାତା-ପିତାଙ୍କୁ ବ୍ୟବହାରିକ ସମସ୍ୟାର ସମାଧାନ ମିଳେ । ତାଙ୍କ ନିଜ ବ୍ୟକ୍ତିଗତ ଜୀବନକୁ ସୁଧାରିବାର ଚାବି ମିଳେ । ତାହା ବ୍ୟତୀତ ପିଲାଙ୍କ ସହିତ ଦୈନନ୍ଦିନ ଜୀବନରେ ଆସୁଥିବା ଅସୁବିଧାର ଅନେକ ସମାଧାନ ପ୍ରାପ୍ତ ହୁଏ, ଯାହାଦ୍ୱାରା ସଂସାର ବ୍ୟବହାର ସୁଖମୟ ରୂପରେ ପରିପୂର୍ଣ୍ଣ ହେବ । ମାତା-ପିତା ଏବଂ ପିଲାଙ୍କ ମଧ୍ୟରେ ଯେଉଁ ପାରସ୍ପରିକ ସମ୍ବନ୍ଧ ଅଛି, ତାତ୍ତ୍ୱିକ ଦୃଷ୍ଟିରେ ଯେଉଁ ଯେଉଁ ବାସ୍ତବିକତା ସବୁ ଅଛି, ତାହା ମଧ୍ୟ ଜ୍ଞାନୀପୁରୁଷ ବୁଝାନ୍ତି; ଯାହାଦ୍ୱାରା ମୋକ୍ଷମାର୍ଗରେ ଆଗକୁ ବଢ଼ିବା ପାଇଁ ମାତା-ପିତାଙ୍କ ମୂର୍ଚ୍ଛା ଦୂର ହୋଇଯାଏ ଏବଂ ଜାଗୃତି ଆସିଯାଏ ।

ଯେବେକି ଉତ୍ତରାର୍ଧରେ ପରମପୂଜ୍ୟ ଦାଦାଶ୍ରୀଙ୍କର ପିଲାମାନଙ୍କ ଏବଂ ଯୁବ ପୁଅ-ଝିଅଙ୍କ ସହ ହୋଇଥିବା ସତ୍‌ସଙ୍ଗର ସଙ୍କଳନ ଅଛି, ଯେଉଁଥିରେ ପିଲାମାନେ ନିଜ ଜୀବନର ସମସ୍ତ ବ୍ୟକ୍ତିଗତ ମନୋବ୍ୟଗ୍ରତାର ସମାଧାନ ପ୍ରାପ୍ତ କରିଛନ୍ତି । ମାତା-ପିତାଙ୍କ ସହିତ କିଭଳି ବ୍ୟବହାର କରିବା ଉଚିତ, ସେହି ସମଝ୍(ଦୃଷ୍ଟି) ପ୍ରାପ୍ତ ହୁଏ । ବିବାହ କରିବା ସମ୍ବନ୍ଧୀୟ ଏପରି ଉତ୍ତମ ସମଝ୍ ପ୍ରାପ୍ତ ହୁଏ ଯେ ଯୁବପିଢ଼ି ନିଜ ଜୀବନରେ ପ୍ରକୃତ କଥା ବୁଝି, ବ୍ୟବହାରରେ ପୂର୍ଣ୍ଣରୂପରେ ନିରାକରଣ ଆଣିପାରନ୍ତି । ପିଲାମାନେ ନିଜ ମାତା-ପିତାଙ୍କ ସେବାର ମାହାତ୍ମ୍ୟ ଏବଂ ପରିଣାମ ବୁଝନ୍ତି ।

ମାତା-ପିତାଙ୍କ ସମସ୍ୟା ଯେପରିକି ପିଲାମାନଙ୍କ ପାଇଁ ଏତେ କିଛି କଲି, ତଥାପି ପିଲାମାନେ ଅବଜ୍ଞା କରୁଛନ୍ତି, ଏହାର କାରଣ କ'ଣ ? ପିଲାମାନେ ବଡ଼ ହୋଇ ଏମିତି ସଂସ୍କାରୀ ହେବେ, ସେମିତି ହେବେ ଇତ୍ୟାଦି ଇତ୍ୟାଦି ସ୍ୱପ୍ନ ଯେବେ ନଷ୍ଟ ହେବା ଦିଶେ, ସେତେବେଳେ ଯେଉଁ ଆଘାତର ଅନୁଭବ ହୁଏ, ତାହାର ସମାଧାନ କିପରି କରିବା ? କିଛି ପିଲା ତ ମାତା-ପିତାଙ୍କ ବୈବାହିକ ଜୀବନର ସୁଖ( ! ) ଦେଖି ବାହାହେବା ପାଇଁ ମନା କରିଦିଅନ୍ତି, ସେତେବେଳେ କ'ଣ କରିବା ? ମାତା-ପିତା

ସଂସ୍କାରର ସିଞ୍ଚନ କିପରି କରିବେ ? ନିଜେ ତାହାର ଜ୍ଞାନ କେଉଁଠୁ ପ୍ରାପ୍ତ କରିବେ ? କିପରି ପ୍ରାପ୍ତ କରିବେ ? ବିଗିଡ଼ି ଯାଇଥିବା ପିଲାଙ୍କୁ କେଉଁ ପ୍ରକାରେ ସୁଧାରିବା ? କଥା-କଥାରେ ମାତା-ପିତା ଏବଂ ପିଲାଙ୍କ ମଧ୍ୟରେ ହେଉଥିବା ଘର୍ଷଣ କିପରି ଟଳିବ ? ପିଲାମାନଙ୍କୁ ମାତା-ପିତା ବୋସିଜିମ୍(bossism) କରୁଥିବାର ଲାଗନ୍ତି ଏବଂ ମାତା-ପିତାଙ୍କୁ ପିଲାମାନେ ପଥଭ୍ରଷ୍ଟ ହେଉଥିବାର ଲାଗନ୍ତି; ଏବେ ଏହାର ରାସ୍ତା କ'ଣ ? ପିଲାମାନଙ୍କୁ ଭଲ ଶିଖାଇବା ହେତୁ କିଛି କହିବାକୁ ପଡ଼େ ଏବଂ ପିଲାମାନେ ତାହାକୁ କିଚ୍‌କିଚ୍ ବୁଝି ସାମ୍ନାସାମ୍ନି ତର୍କ କରନ୍ତି ତେବେ କ'ଣ କରିବା ? ଛୋଟ ପିଲା ଏବଂ ବଡ଼ ପିଲାମାନଙ୍କ ସହିତ କିପରି ଅଲଗା-ଅଲଗା ବ୍ୟବହାର କରିବା ?

ଘରର ଭିନ୍ନ ଭିନ୍ନ ପ୍ରକୃତିମାନଙ୍କର ସଠିକ ମାଳି କିପରି ହେବା ? ତାହାର ଲାଭ କେଉଁ ସମଝ୍ ଦ୍ୱାରା ଉଠାଇ ପାରିବା ? କେହି ଲୋଭୀ ତ କେହି ବଦଖର୍ଚ୍ଚୀ, କେହି ଚୋର, ତ କେହି ସନ୍ଥ ସ୍ୱଭାବୀ, ଘରର ପିଲାମାନଙ୍କର ଏପରି ଭିନ୍ନ ଭିନ୍ନ ପ୍ରକୃତି ସବୁ ହୋଇଥିବ ତେବେ, ଘରର ବରିଷ୍ଠ କ'ଣ ବୁଝିବେ ଏବଂ କ'ଣ କରିବେ ?

ବାପକୁ ମଦ, ବିଡ଼ିର ବ୍ୟସନ ଥିବ ତେବେ ସେଥିରୁ କିପରି ଛୁଟକାରା ହେବ, ଯାହାଦ୍ୱାରା ପିଲାମାନଙ୍କୁ ସେସବୁର ଖରାପ ପ୍ରଭାବରୁ ବଞ୍ଚାଇ ପାରିବା ?

ପିଲାମାନେ ଦିନ-ରାତି ଟି.ଭି.-ସିନେମା ଦେଖିବେ ତେବେ, ସେଥିରୁ ସେମାନଙ୍କୁ କିପରି ବଞ୍ଚାଇବା ? ନୂଆ ପିଢ଼ି(ଜେନେରେଶନ୍)ର କେଉଁ ଭଲ କଥା ସବୁକୁ ଧ୍ୟାନରେ ରଖି ତାଙ୍କର ଲାଭ କିପରି ଉଠାଇବା ? କାଲିର କଷାୟପୂର୍ଣ୍ଣ ଏବଂ ବର୍ତ୍ତମାନର ଭୋଗବାଦୀ ପିଢ଼ିର ଅନ୍ତର କିପରି ଦୂର କରିବା ? ଗୋଟିଏ ପଟେ ଆଜିକା ପିଢ଼ିର ହେଲ୍‌ଦୀ ମାଇଣ୍ଡ୍(ତନ୍ଦୁରସ୍ତ ମସ୍ତିଷ୍କ) ଦେଖି ମୁଣ୍ଡ ନଇଁଯିବ, ଏପରି ଲାଗେ ଏବଂ ଅନ୍ୟ ପଟେ ବିଷୟାନ୍ଧ ଦେଖାଯାନ୍ତି, ସେଠାରେ କ'ଣ ହୋଇପାରିବ ?

ଡେରିରେ ଉଠୁଥିବା ପିଲାଙ୍କୁ କିପରି ସୁଧାରିବା ? ପାଠପଢ଼ାରେ କମ୍‌ଜୋର ପିଲାଙ୍କୁ କିପରି ସୁଧାରିବା ? ସେମାନଙ୍କୁ ପଢ଼ିବା ପାଇଁ କିପରି ପ୍ରୋତ୍ସାହିତ କରିବା ? ପିଲାଙ୍କ ସହିତ ବ୍ୟବହାର କରୁଥିବା ସମୟରେ ଯଦି ସମ୍ବନ୍ଧ ଭାଙ୍ଗିଯାଏ ତେବେ କିପରି ସେମାନଙ୍କୁ କାଉଣ୍ଟର ପୁଲୀ ଦ୍ୱାରା ଯୋଡ଼ିବା ?

ପିଲାମାନେ ଯେବେ ପରସ୍ପର ଲଢ଼ନ୍ତି, ତେବେ ତଟସ୍ଥ ରହି କିପରି ନ୍ୟାୟ କରିବା ? ପିଲାମାନେ ରୁଷନ୍ତି ତେବେ କ'ଣ କରିବା ? ପିଲାମାନଙ୍କ କ୍ରୋଧ ଶାନ୍ତ କରିବା ପାଇଁ କ'ଣ କରିବା ? ପିଲାମାନଙ୍କୁ କ'ଣ ସେମାନଙ୍କ ଭୁଲର ଅନୁଭବ

କରାଇ ପାରିବା ? କ'ଣ ପିଲାମାନଙ୍କୁ ଗାଳି କରିବା ଜରୁରୀ ଅଟେ ? ଗାଳି କରିବା ନା ଅନୁଭବ କରାଇବା, କେଉଁ ପ୍ରକାରେ ? ପିଲାମାନଙ୍କୁ ଯଦି ଗାଳି କରିବା ତେବେ କେଉଁ କର୍ମ ବନ୍ଧାହୁଏ ? ସେମାନଙ୍କୁ ଦୁଃଖ ହୁଏ ତେବେ କି ଉପାୟ ଅଛି ? ପିଲାମାନଙ୍କୁ ପିଟିବା ଉଚିତ ? ପିଟି ଦେଲେ ତେବେ କି ଉପାୟ ଅଛି ? କାଚ ସମାନ ବାଳମାନସଙ୍କୁ କିପରି ହ୍ୟାଣ୍ଡେଲ୍ କରିବା ? ମାତା-ପିତା କଠୋର ପରିଶ୍ରମ କରି ରୋଜଗାର କରିବେ ଏବଂ ପିଲାମାନେ ବେକାର ଖର୍ଚ୍ଚ କରୁଥିବେ ତେବେ କି ଏଡ୍‌ଜଷ୍ଟମେଣ୍ଟ(ସମାଧାନ) ନେବା ? ପିଲାମାନଙ୍କୁ ସ୍ୱତନ୍ତ୍ରତା ଦେବା ଉଚିତ ? ଯଦି ଦେବା ଉଚିତ ତେବେ କେଉଁ ପର୍ଯ୍ୟନ୍ତ ? ପୁଅ ମଦୁଆ ହେବ ତେବେ କି ପଦକ୍ଷେପ ନେବା ? ବହୁତ ଗାଳିଦେବ ତେବେ କ'ଣ କରିବା ? ମୋକ୍ଷକୁ ଧ୍ୟେୟ ରଖି 'ଅଧ୍ୟାତ୍ମ'ଏବଂ ମାତା-ପିତା ଆଉ ପିଲାଙ୍କ ବ୍ୟବହାରର ସମନ୍ୱୟ କିପରି କରିବା ? ମାତା-ପିତା ଯଦି ପୁଅଠୁ ଅଲଗା ଥିବେ ତେବେ କ'ଣ କରିବା ଉଚିତ ?

ରାତିରେ ଝିଅମାନେ ଡେରିରେ ଆସିବେ ତେବେ ? କୁସଙ୍ଗତି ହୋଇ ଯାଇଥିବ ତେବେ କ'ଣ କରିବା ? ଝିଅ ଅଜାତି ସହ ବାହା ହୋଇଥିବ ତେବେ କ'ଣ କରିବା ? ଝିଅ ଉପରେ ଶଙ୍କା ରହୁଥିବ ତେବେ କ'ଣ କରିବା ଉଚିତ ?

ୱିଲ୍-ଇଚ୍ଛାପତ୍ର କରିବା ଉଚିତ ? କିଭଳି କରିବା ଉଚିତ ? କାହାକୁ କେତେ ଦେବା ଉଚିତ ? ମରିବା ପୂର୍ବରୁ ଦେବା ନା ପରେ ? ପୁଅ ପଇସା ମାଗିବ ତେବେ କ'ଣ କରିବା ? ଘରଜୋଇଁଆ ରଖିବା ଉଚିତ ନା ନାହିଁ ?

ପିଲାମାନଙ୍କ ଉପରେ କେତେ ମୋହ ରଖିବା ? ସ୍ନେହ, ମମତାର ରହସ୍ୟ କ'ଣ ? କେତେ ଲାଭଦାୟକ ? ଗୁରୁ(ପତ୍ନୀ) ଆସିବା ମାତ୍ରେ ପୁଅ ବଦଳିଯାଏ ତେବେ କ'ଣ କରିବା ?

ଯାହାର ପିଲା ନ ହୁଅନ୍ତି ତାଙ୍କର କର୍ମ କିପରି ଅଟେ ? ପିଲା ନଥିବେ ତେବେ ଶ୍ରାଦ୍ଧ କରି କିଏ ମୁକ୍ତି ଦେବ ? ଅଳ୍ପ ବୟସରେ ପିଲାମାନଙ୍କ ମୃତ୍ୟୁ ହେବ ତେବେ ମାତା-ପିତା କିପରି ସହିବେ ? ସେମାନଙ୍କ ପାଇଁ କ'ଣ କରିବା ? ଯେତେବେଳେ ଦାଦାଶ୍ରୀଙ୍କ ପିଲାମାନେ ମରିଗଲେ ସେତେବେଳେ ସେ କ'ଣ କରିଥିଲେ ? ରିଲେଶନ୍(ସମ୍ବନ୍ଧ) ଭାଙ୍ଗୁଥିବ ତେବେ କିପରି ଯୋଡ଼ିବା ? ଜ୍ଞାନୀ କେଉଁ ଜ୍ଞାନ ଦ୍ୱାରା ଭବସାଗରକୁ ପାରି କରିବାର ରାସ୍ତା ଦେଖାନ୍ତି ?

କଢ଼ିକୁ ଖେଳାଇବାର କଳା ଜ୍ଞାନୀଙ୍କର କିପରି ହୋଇଥାଏ, ତାହା ଏଠି ଦେଖିବାକୁ ମିଳେ । ଏଠାରେ ଦୁଇ ବର୍ଷରୁ ନେଇ ବାର ବର୍ଷର ପିଲାଙ୍କୁ ଖେଳିବାର ଦେଖନ୍ତି, ତେବେ ବହୁତ-କିଛି ଶିଖିବାକୁ ମିଳେ, ପ୍ରେମ, ସମତା ଏବଂ ଆତ୍ମୀୟତାର ରଙ୍ଗରୁ ।

ପିଲାମାନଙ୍କୁ କେଉଁ ପ୍ରକାରେ ପଢ଼ାଇବା-ଲେଖାଇବା ଉଚିତ ଏବଂ ଗଢ଼ିବା ଉଚିତ ?

ପିଲାମାନେ ବାହା ହେବା ଯୋଗ୍ୟ ହୁଅନ୍ତି, ତେବେ ବଡ଼ ପ୍ରଶ୍ନ ଆସି ଛିଡ଼ା ହୁଏ, ପାତ୍ର କିଏ ହେବ ଏବଂ କିପରି ପସନ୍ଦ କରିବୁ ? ଦାଦାଶ୍ରୀ ପୁଅ ଏବଂ ଝିଅମାନଙ୍କୁ ବହୁତ ସୁନ୍ଦର ମାର୍ଗଦର୍ଶନ ଦିଅନ୍ତି, ଯାହାଦ୍ୱାରା ମାତା-ପିତା ଏବଂ ପିଲାଙ୍କ ସହମତିରେ ପାତ୍ରର ଚୟନ ହେବ ।

ଝିଅମାନଙ୍କୁ ଶ୍ୱଶୁର ଘରେ ସମସ୍ତଙ୍କୁ ପ୍ରେମଦ୍ୱାରା ବଶ କରିବାର ସୁନ୍ଦର ଚାବିସବୁ ଦାଦାଶ୍ରୀ ପ୍ରଦାନ କରିଛନ୍ତି । ମାତା-ପିତାଙ୍କ ସେବା, ବିନୟ ଦ୍ୱାରା ତାଙ୍କର ଆଶିଷ ପ୍ରାପ୍ତ କରିବାର ମହତ୍ତ୍ୱ କ'ଣ ଏବଂ ତାହା କିପରି ପ୍ରାପ୍ତ ହେବ ?

ଶେଷରେ, ବୃଦ୍ଧମାନଙ୍କ ବ୍ୟଥା ଏବଂ ତାହାର ସମାଧାନ ପାଇଁ ବୃଦ୍ଧାଶ୍ରମର ଆବଶ୍ୟକତା ଏବଂ ଆଧ୍ୟାତ୍ମିକ ଜୀବନ କିପରି ଜୀଇଁବା, ଏହାର ସୁନ୍ଦର ମାର୍ଗଦର୍ଶନ ଏଠାରେ ସଙ୍କଳିତ ହୋଇଛି; ଯାହାକୁ ପଢ଼ି ବୁଝିବା ଦ୍ୱାରା ମାତା-ପିତା ଏବଂ ପିଲା ଉଭୟଙ୍କ ବ୍ୟବହାର ଆଦର୍ଶ ହେବ ।

**-ଡା. ନୀରୂବେନ ଅମୀନ**

# ସୂଚିପୃଷ୍ଠ

## ମାତା-ପିତାଙ୍କର ପିଲାଙ୍କ ପ୍ରତି ବ୍ୟବହାର(ପୂର୍ବାର୍ଦ୍ଧ)



## ପିଲାଙ୍କର ମାତା-ପିତାଙ୍କ ପ୍ରତି ବ୍ୟବହାର(ଉତ୍ତରାର୍ଦ୍ଧ)

# ମାତା-ପିତାଙ୍କର ପିଲାଙ୍କ ପ୍ରତି ବ୍ୟବହାର
## (ପୂର୍ବାର୍ଦ୍ଧ)

### (୧) ସଂସ୍କାର ସିଞ୍ଚନ...

**ପ୍ରଶ୍ନକର୍ତ୍ତା :** ଏଠି ଆମେରିକାରେ ପଇସା ଅଛି, କିନ୍ତୁ ସଂସ୍କାର ନାହିଁ ଆଉ ଏଠି ଆଖପାଖର ବାତାବରଣ ହିଁ ଏପରି ଅଟେ, ତେବେ ଏଥିପାଇଁ କ'ଣ କରିବୁ ?

**ଦାଦାଶ୍ରୀ :** ପ୍ରଥମେ ତ ମାତା-ପିତାଙ୍କୁ ସଂସ୍କାରୀ ହେବା ଉଚିତ। ପୁଣି ପିଲାମାନେ ବାହାରକୁ ଯିବେ ହିଁ ନାହିଁ। ମାତା-ପିତା ଏପରି ହୁଅନ୍ତୁ ଯେ ତାଙ୍କ ପ୍ରେମ ଦେଖି ପିଲାମାନେ ସେଠାରୁ ଦୂରକୁ ଯିବେ ହିଁ ନାହିଁ। ମାତା-ପିତାଙ୍କୁ ଏପରି ପ୍ରେମମୟ ହେବା ଉଚିତ। ପିଲାଙ୍କୁ ଯଦି ସୁଧାରିବାର ଅଛି ତେବେ ତୁମେ ଉତ୍ତରଦାୟୀ ଅଟ। ପିଲାମାନଙ୍କ ସହ ତୁମେ କର୍ତ୍ତବ୍ୟରୁ ବାନ୍ଧି ହୋଇଛ। ତୁମକୁ ବୁଝାପଡ଼ିଲା ନାହିଁ ?

ଆମ ଲୋକମାନେ ପିଲାମାନଙ୍କୁ ବହୁତ ଉଚ୍ଚ ସ୍ତରର ସଂସ୍କାର ଦେବା ଉଚିତ। ଆମେରିକାରେ ଅନେକ ଲୋକ କୁହନ୍ତି ଯେ 'ଆମ ପିଲାମାନେ ମାଂସାହାର କରୁଛନ୍ତି ଏବଂ ଏମିତି ବହୁତ କିଛି କରୁଛନ୍ତି'। ମୁ ପଚାରିଲି, 'ତୁମେ ମାଂସାହାର କରୁଛ ?' ତେବେ କୁହନ୍ତି, 'ହଁ ଆମେ କରୁଛୁ।' ମୁଁ କହିଲି, 'ତେବେ ତ ପିଲାମାନେ ବି କରିବେ ନିଶ୍ଚୟ।' ଆମରି ସଂସ୍କାର ! ଆଉ ଯଦି ଆମେ କରୁ ନଥିବା ତେବେ ମଧ୍ୟ ସେମାନେ କରିପାରନ୍ତି, କିନ୍ତୁ ଅଲଗା ଜାଗାରେ। କିନ୍ତୁ ଆମ କର୍ତ୍ତବ୍ୟ ଏତିକି ଯେ ଯଦି ସେମାନଙ୍କୁ ସଂସ୍କାରୀ ବନାଇବାର ଥିବ ତେବେ ଆମକୁ ଆମର କର୍ତ୍ତବ୍ୟ ନ ଭୁଲିବା ଉଚିତ।

ଏବେ ତୁମକୁ ପିଲାମାନଙ୍କର ଧ୍ୟାନ ରଖିବା ଉଚିତ ଯେ ୟାଡୁ-ସ୍ୟାଡୁ, ଏସବୁ ନ ଖାଆନ୍ତୁ। ଆଉ ଯଦି ତୁମେ ଖାଉଥିବ ତେବେ ଏହି ଜ୍ଞାନ ପ୍ରାପ୍ତ ହେବା ପରେ ତୁମକୁ ସବୁ ବନ୍ଦ କରିଦେବା ଉଚିତ। ଅର୍ଥାତ ସେମାନେ ତୁମର ଯେଉଁଭଳି ସଂସ୍କାର ଦେଖିବେ ସେହିପରି ହିଁ କରିବେ। ପୂର୍ବରୁ ଆମ ମାତା-ପିତାଙ୍କୁ କାହିଁକି ସଂସ୍କାରୀ କୁହାଯାଉଥିଲା ? ସେମାନେ ବହୁତ ନିୟମବାଲା ଥିଲେ ଏବଂ ସେତେବେଳେ ସେମାନଙ୍କ ମଧ୍ୟରେ ସଂଯମ ଥିଲା। ଆଉ ଏମାନେ ତ ସଂଯମରହିତ ଅଟନ୍ତି।

**ପ୍ରଶ୍ନକର୍ତ୍ତା :** ପିଲାମାନେ ଯେବେ ବଡ଼ ହୋଇଯାନ୍ତି, ସେତେବେଳେ ଆମେ ସେମାନଙ୍କୁ ଧର୍ମର ଜ୍ଞାନ କିପରି ଦେବା ଉଚିତ ?

**ଦାଦାଶ୍ରୀ :** ତୁମେ ଧର୍ମ ସ୍ୱରୂପ ହୋଇଯାଅ, ତେବେ ସେମାନେ ମଧ୍ୟ ହୋଇଯିବେ । ତୁମର ଯେମିତି ଗୁଣ ଥିବ, ପିଲାମାନେ ସେହିପରି ହିଁ ଶିଖିବେ । ଏଣୁ ତୁମେ ହିଁ ଧର୍ମିଷ୍ଠ ହୋଇଯାଅ । ତୁମକୁ ଦେଖି ଦେଖି ଶିଖିବେ । ଯଦି ତୁମେ ସିଗାରେଟ ପିଉଥିବ, ତେବେ ସେମାନେ ମଧ୍ୟ ସିଗାରେଟ ପିଇବା ଶିଖିବେ । ତୁମେ ମଦ ପିଉଥିବ ତେବେ ସେମାନେ ମଧ୍ୟ ମଦ ପିଇବା ଶିଖିବେ । ମାଂସ ଖାଉଥିବ ତେବେ ମାଂସ ଖାଇବା ଶିଖିବେ । ତୁମେ ଯାହା କରୁଥିବ ସେହିପରି ହିଁ ସେମାନେ ଶିଖିବେ । ସେମାନେ ଭାବିବେ ଯେ ଆମେ ଏମାନଙ୍କଠାରୁ ବି ବଳିକି କରିବା ।

**ପ୍ରଶ୍ନକର୍ତ୍ତା :** ଭଲ ସ୍କୁଲରେ ପଢ଼ାଇଲେ ଭଲ ସଂସ୍କାର ମିଳେ ନାହିଁ ?

**ଦାଦାଶ୍ରୀ :** କିନ୍ତୁ, ସେ ସବୁ ସଂସ୍କାର ନୁହେଁ । ମାତା-ପିତାଙ୍କ ବ୍ୟତୀତ ପିଲାମାନେ ଅନ୍ୟ କାହାରିଠାରୁ ସଂସ୍କାର ପ୍ରାପ୍ତ କରନ୍ତି ନାହିଁ । ସଂସ୍କାର ମାତା-ପିତାଙ୍କର, ଗୁରୁଙ୍କର । ଏବଂ ଅଳ୍ପ-ବହୁତ ତା'ର ଯେଉଁ ସର୍କଲ୍ ଥାଏ, ଫ୍ରେଣ୍ଡସର୍କଲ୍, ତାହାର ସଂଯୋଗ । ସବୁଠୁ ଅଧିକ ସଂସ୍କାର ମାତା-ପିତାଙ୍କଠାରୁ ମିଳେ । ମାତା-ପିତା ସଂସ୍କାରୀ ହୋଇଥିବେ, ତେବେ ପିଲାମାନେ ମଧ୍ୟ ସଂସ୍କାରୀ ହୁଅନ୍ତି ଅନ୍ୟଥା ସଂସ୍କାରୀ ହେବେ ହିଁ ନାହିଁ ।

**ପ୍ରଶ୍ନକର୍ତ୍ତା :** ଆମେ ପିଲାଙ୍କୁ ପାଠପଢ଼ା ପାଇଁ 'ଇଣ୍ଡିଆ' ପଠାଇ ଦେବୁ, ତେବେ କ'ଣ ଆମେ ନିଜର ଦାୟିତ୍ୱ ଭୁଲି ଯାଉନାହୁଁ ?

**ଦାଦାଶ୍ରୀ :** ନା, ଭୁଲୁନାହଁ । ତୁମେ ତାଙ୍କର ସବୁ ଖର୍ଚ୍ଚ ଦେଇଦିଅ । ସେଠାରେ ତ ଏମିତି ବି ସ୍କୁଲ ଅଛି ଯେ ଯେଉଁଠି ହିନ୍ଦୁସ୍ତାନର ଲୋକ ବି ନିଜ ପିଲାଙ୍କୁ ପଢ଼ିବା ପାଇଁ ପଠାନ୍ତି । ଖାଇବା-ପିଇବା ସେଇଠି ଏବଂ ରହିବା ମଧ୍ୟ ସେଇଠି, ଏପରି ଭଲ ସ୍କୁଲ ଅଛି ।

**ପ୍ରଶ୍ନକର୍ତ୍ତା :** ଦାଦା, ଘର-ସଂସାର ଶାନ୍ତିପୂର୍ଣ୍ଣ ରହୁ ଏବଂ ଅନ୍ତରାତ୍ମାର ମଧ୍ୟ ରକ୍ଷଣ ହେଉ, ଏପରି କରିଦିଅନ୍ତୁ ।

**ଦାଦାଶ୍ରୀ :** ଘର ସଂସାର ଶାନ୍ତିପୂର୍ଣ୍ଣ ରହିବ କେବଳ ଏତିକି ନୁହେଁ, କିନ୍ତୁ ପିଲାମାନେ ମଧ୍ୟ ତୁମକୁ ଦେଖି ଅଧିକ ସଂସ୍କାରୀ ହେବେ, ଏପରି ଅଟେ । ଏ ତ ମାତା-ପିତାଙ୍କର ପାଗଳାମି ଦେଖି ପିଲାମାନେ ମଧ୍ୟ ପାଗଳ ହୋଇଗଲେଣି । କାହିଁକିନା ମାତା-ପିତାଙ୍କ ଆଚାର-ବିଚାର ଉପଯୁକ୍ତ ନାହିଁ । ପତି-ପତ୍ନୀ ମଧ୍ୟ, ପିଲାମାନେ ବସିଥିବେ, ସେତିକିବେଳେ ଅନୁପଯୁକ୍ତ ବ୍ୟବହାର କରନ୍ତି, ତେବେ ପୁଣି ପିଲାମାନେ ବିଗିଡ଼ିବେ ନାହିଁ ତ ଆଉ କ'ଣ ହେବେ ? ପିଲାଙ୍କ ମଧ୍ୟରେ ସଂସ୍କାର କିପରି ଆସିବ ?

ମର୍ଯ୍ୟାଦା ତ ରଖିବା ଉଚିତ ନା ! ଅଗ୍ନିର ପ୍ରଭାବ କିପରି ପଡ଼େ ? ଛୋଟ ପିଲା ମଧ୍ୟ ଅଗ୍ନିକୁ ଡରେ ନା ? ମାତା-ପିତାଙ୍କ ମନ ଫ୍ରାକ୍‌ଚର ହୋଇଗଲାଣି । ମନ ବିହ୍ୱଳ ହୋଇଗଲାଣି । କିଛି ବି କହିଦିଅନ୍ତି, ଅନ୍ୟକୁ ଦୁଃଖଦାୟୀ ହେବ, ସେପରି ଶବ୍ଦ କହି ଦିଅନ୍ତି । ଏହାଦ୍ୱାରା ପିଲାମାନେ ବିଗିଡ଼ି ଯାଆନ୍ତି । ପତ୍ନୀ ଏପରି କୁହେ ଯେ ପତିକୁ ଦୁଃଖ ହୁଏ ଏବଂ ପତି ଏପରି କୁହେ ଯେ ପତ୍ନୀକୁ ଦୁଃଖ ହୁଏ । ହିନ୍ଦୁସ୍ତାନର ମାତା-ପିତା କିପରି ହେବା ଉଚିତ ? ସେମାନେ ପିଲାଙ୍କୁ ଶିଖାଇ, ଏପରି ପ୍ରସ୍ତୁତ କରିବା ଉଚିତ୍ ଯେପରି ସବୁ ସଂସ୍କାର ତାଙ୍କୁ ପନ୍ଦର ବର୍ଷ ବୟସ ମଧ୍ୟରେ ଦେଇ ଦେବେ ।

**ପ୍ରଶ୍ନକର୍ତ୍ତା :** ଏବେ ଏ ଯେଉଁ ତା'ର ସଂସ୍କାରର ସ୍ତର, ତାହା ମଧ୍ୟ କମ ହେବାକୁ ଲାଗିଲାଣି । ସେଥିପାଇଁ ଏ ସବୁ ଅସୁବିଧା ହେଉଛି ।

**ଦାଦାଶ୍ରୀ :** ନା, ନା । ସଂସ୍କାର ହିଁ ଖତମ୍ ହେବାକୁ ଲାଗିଲାଣି । ଏମିତିରେ ଏବେ ଦାଦା ମିଳିଗଲେ, ଏଣୁ ପୁଣି ଥରେ ମୂଳ ସଂସ୍କାରରେ ଆଣିବେ । ଯେପରି ସତ୍ୟଯୁଗରେ ଥିଲା, ସେହିପରି ସଂସ୍କାର ପୁଣି ଥରେ ଆଣିବେ । ଏହି ହିନ୍ଦୁସ୍ତାନର ଗୋଟିଏ ପିଲା ସାରା ବିଶ୍ୱର ବୋଝ ଉଠାଇ ପାରିବ, ଏତେ ଶକ୍ତିର ସ୍ୱାମୀ ଅଟେ । କେବଳ ତା'କୁ ପୁଷ୍ଟି ଦେବାର ଆବଶ୍ୟକତା ଅଛି । ଏମାନେ ତ ଭକ୍ଷକ ବାହାରିଲେ ! ଭକ୍ଷକ ଅର୍ଥାତ ନିଜ ସୁଖ ପାଇଁ ଯିଏ ଅନ୍ୟମାନଙ୍କୁ ସବୁ ଦିଗରୁ ଲୁଟି ନିଅନ୍ତି । ଯିଏ ନିଜର ସୁଖ ତ୍ୟାଗ କରି ବସିଛି, ସେ ହିଁ ଅନ୍ୟମାନଙ୍କୁ ସମସ୍ତ ସୁଖ ଦେଇପାରିବ ।

କିନ୍ତୁ ଏଠି ତ ସେଠ୍‌ଜୀ ସାରାଦିନ କେବଳ ଲକ୍ଷ୍ମୀର ହିଁ ବିଚାରରେ ରହନ୍ତି । ସେତେବେଳେ ମୋତେ ସେଠ୍‌ଜୀଙ୍କୁ କହିବାକୁ ପଡ଼େ ଯେ 'ସେଠ୍, ତୁମେ ଲକ୍ଷ୍ମୀ ପଛରେ ପଡ଼ିଛ ଆଉ ସେଠି ଘର ଖଣ୍ଡ ଖଣ୍ଡ ହୋଇ ଗଲାଣି !' ଝିଅମାନେ ମୋଟର ସାଇକେଲ ନେଇ ଗୋଟେ ଆଡ଼େ ଯାଉଛନ୍ତି, ପୁଅ ମାନେ ଅନ୍ୟ ଆଡ଼େ ଏବଂ ସେଠାଣୀ ଆଉ କୁଆଡ଼େ ଯାଉଛନ୍ତି ! ସେଠ୍, ତୁମେ ତ ସବୁ ଦିଗରୁ ଲୁଟିଗଲ ! ସେତେବେଳେ ସେଠ୍ ପଚାରିଲେ, 'ମୁଁ କ'ଣ କରିବି ?' ମୁଁ କହିଲି, 'କଥାକୁ ବୁଝ ଏବଂ ଜୀବନ କିପରି ଜୀଇଁବା, ଏହା ବୁଝ । କେବଳ ପଇସା ପଛରେ ପଡ଼ ନାହିଁ । ଶରୀରର ଧ୍ୟାନ ରଖ, ନହେଲେ ହାର୍ଟଫେଲ୍ ହୋଇଯିବ । ଶରୀରର ଧ୍ୟାନ, ପଇସାର ଧ୍ୟାନ, ଝିଅମାନଙ୍କ ସଂସ୍କାରର ଧ୍ୟାନ, ସବୁ କୋଣ ପହଁରା ମାରିବାର ଅଛି । ତୁମେ ଗୋଟିଏ କୋଣ ପହଁରା ମାରୁଛ । ଏବେ ବଙ୍ଗଳାର ଗୋଟିଏ କୋଣ ଝାଡୁ ମାରିବ ଏବଂ ବାକି ସବୁ ଜାଗା ଅଳିଆ ପଡ଼ି ରହିଥିବ ତେବେ କେମିତି ଲାଗିବ ? ସବୁ କୋଣ ଝାଡୁ ମାରିବାର ଅଛି । ଏପରି ଜୀବନ କିପରି ବଞ୍ଚିହେବ ? ଏଣୁ ତାଙ୍କ ସାଥିରେ ଭଲ

ବ୍ୟବହାର କର, ଉଚ୍ଚ ସଂସ୍କାରୀ ବନାଅ । ଏହି ପିଲାମାନଙ୍କୁ ଉଚ୍ଚ ସଂସ୍କାରୀ ବନାଅ । ତୁମେ ନିଜେ ତପ କର, କିନ୍ତୁ ସେମାନଙ୍କୁ ସଂସ୍କାରୀ ବନାଅ ।'

**ପ୍ରଶ୍ନକର୍ତ୍ତା :** ଆମେ ସେମାନଙ୍କୁ ସୁଧାରିବା ପାଇଁ ତ ସମସ୍ତ ପ୍ରଚେଷ୍ଟା କରୁ, ତଥାପି ଯଦି ସେ ନ ସୁଧୁରେ ତେବେ ପୁଣି କ'ଣ ଆଦର୍ଶ ପିତାକୁ ତାହା ପ୍ରାରବ୍ଧ ବୋଲି ମାନି ଛାଡ଼ିଦେବା ଉଚିତ ?

**ଦାଦାଶ୍ରୀ :** ନା, କିନ୍ତୁ ପ୍ରଚେଷ୍ଟା ତ ତୁମେ ତୁମ ଅନୁସାରେ କର ନା ? ତୁମ ପାଖରେ ସାର୍ଟିଫିକେଟ ଅଛି ? ବତାଅ ମୋତେ ।

**ପ୍ରଶ୍ନକର୍ତ୍ତା :** ଆମ ବୁଦ୍ଧି ଅନୁସାରେ ପ୍ରଚେଷ୍ଟା କରୁ ।

**ଦାଦାଶ୍ରୀ :** ତୁମ ବୁଦ୍ଧି ଅର୍ଥାତ, ମୁଁ ତୁମକୁ କହି ରଖେ ଯେ ଜଣେ ମଣିଷ ନିଜେ ଜଜ୍ ହୋଇଥିବ, ନିଜେ ହିଁ ଅପରାଧୀ ହୋଇଥିବ ଆଉ ଓକିଲ ବି ନିଜେ ହୋଇଥିବ, ତେବେ ସେ କିଭଳି ନ୍ୟାୟ କରିବ ?

ନିଜ ସଂସ୍କାର ତ ପିଲା ନେଇକି ହିଁ ଆସେ । କିନ୍ତୁ ସେଥିରେ ତୁମକୁ ହେଲ୍ପ କରି ସେ ସଂସ୍କାରକୁ ରଙ୍ଗ ଦେବାର ଆବଶ୍ୟକତା ଅଛି ।

କେବେବି ତା'କୁ ଛାଡ଼ିଦେବା ଉଚିତ ନୁହେଁ । ସେମାନଙ୍କର ଧ୍ୟାନ ରଖିବା ଉଚିତ । ଛାଡ଼ିଦେବ ତେବେ ପୁଣି ସେ ଖତମ୍ ହୋଇଯିବ ।

**ପ୍ରଶ୍ନକର୍ତ୍ତା :** ହଁ, ଏପରି କରୁ, କିନ୍ତୁ ଲାଷ୍ଟ ଷ୍ଟେଜ୍‌ରେ କ'ଣ ତାହା ପ୍ରାରବ୍ଧ ଉପରେ ଛାଡ଼ିଦେବା ଉଚିତ ?

**ଦାଦାଶ୍ରୀ :** ନା, ଛାଡ଼ି ପାରିବା ନାହିଁ । ଏପରି ଛାଡ଼ିବାର ସମୟ ଆସେ, ତେବେ ମୋ ପାଖକୁ ନେଇ ଆସିବ । ମୁଁ ଅପରେଶନ କରିଦେବି । ଏପରି ଛାଡ଼ି ପାରିବା ନାହିଁ, ଜୋଖିମ ଅଟେ ।

ଜଣେ ପୁଅ ତା' ବାପାଙ୍କ ନିଶ ଟାଣୁ ଥିଲା, ତ ବାପା ଖୁସି ହୋଇଗଲା । କହିଲା, 'କେମିତିକା ପୁଅ ମୋର ! ଦେଖ, ମୋ ନିଶ ଟାଣିଲା !' ନିଅ, ଏବେ ତା' କହିବା ଅନୁସାରେ ଯଦି କରିବ ତେବେ ପୁଅ ନିଶ ଧରିବ ଏବଂ ବାରମ୍ବାର ଟାଣିବ, ତା'ପରେ ମଧ୍ୟ ଯଦି କିଛି ନ କହିବ ତେବେ ପୁଣି କ'ଣ ହେବ ? ଆଉ କିଛି ନ କରିବା ତେବେ ପିଲାଙ୍କୁ ଟିକେ ଚିମୁଟି ଦେବ, ଚିମୁଟି ଦେଲେ ସେ ବୁଝିବ ଯେ ଏହା ଠିକ କଥା ନୁହେଁ । ମୁଁ ଏ ଯେଉଁ ବ୍ୟବହାର କରୁଛି ତାହା ଠିକ ନୁହେଁ, ଏପରି ତା'କୁ ଜ୍ଞାନ ହେବ । ତା'କୁ ବେଶୀ ମାରିବ ନାହିଁ, ଧୀରେ କି ଚିମୁଟି ଦେବ ।

ବାପ ପିଲାର ମା'କୁ ଡାକିଲା, ସେତେବେଳେ ସେ ରୁଟି ବେଲୁଥିଲା । ସେ କହିଲା, 'କଣ କାମ ଅଛି ? ମୁଁ ରୁଟି ବେଲୁଛି ।' 'ତୁମେ ଏଠାକୁ ଆସ, ଶୀଘ୍ର ଆସ, ଶୀଘ୍ର ଆସ, ଶୀଘ୍ର ଆସ!' ସେ ଦୌଡ଼ି-ଦୌଡ଼ି ଆସିଲା, 'କଣ ହେଲା ?' ତେବେ କୁହେ, 'ଦେଖ, ଦେଖ, ପୁଅ କେତେ ହୁସିଆର ହୋଇଗଲାଣି ! ଦେଖ, ଗୋଡ଼ର ଗୋଇଠି ଉଚ୍ଚା କରି ପକେଟରୁ ପଚିଶ ଟଙ୍କା ବାହାର କଲା ।' ପିଲା ଏହା ଦେଖି ଭାବେ, 'ଆରେ ! ମୁଁ ଆଜି ବହୁତ ଭଲ କାମ କଲି । ଏବେ ମୁଁ ଏଭଳି କାମ ଶିଖିଗଲି ।' ଏମିତି ପୁଣି ସେ ଚୋର ବନିଗଲା । ତେବେ କ'ଣ ହେବ ? 'ପକେଟରୁ ପଇସା ବାହାର କରିବା ଭଲ' ଏପରି ଜ୍ଞାନ ତା'କୁ ପ୍ରକଟ ହୋଇଗଲା । ତୁମକୁ କ'ଣ ଲାଗୁଛି ? କ'ଣ ପାଇଁ କହୁ ନାହଁ ? କ'ଣ ଏପରି କରିବା ଉଚିତ ?

ଏଭଳି ଘନଚକ୍କର(ମୂର୍ଖ, ବୋକା) କେଉଁଠୁ ଜନ୍ମ ହେଲେ ! ଏମାନେ ବାପ ହୋଇ ବସିଗଲେ ! ଲଜ୍ଜ୍ୟା ଲାଗୁନାହିଁ ? ଏହାଦ୍ୱାରା ପିଲାକୁ କିଭଳି ପ୍ରୋତ୍ସାହନ ମିଳିଲା, ତାହା ବୁଝାପଡୁଛି ? ପିଲା ଦେଖିଲା ଯେ 'ମୁଁ ବହୁତ ବଡ଼ ପରାକ୍ରମ କଲି !' ଏହିପରି ଲୁଟିଯିବା କ'ଣ ଶୋଭା ଦେଉଛି ତୁମକୁ ? କ'ଣ କହିଲେ ପିଲାମାନଙ୍କୁ 'ଏନ୍‌କରେଜମେଣ୍ଟ' (ପ୍ରୋତ୍ସାହନ) ମିଳିବ ଏବଂ କ'ଣ କହିଲେ କ୍ଷତି ହେବ, ତାହାର ଭାନ୍(ହୋସ) ତ ରହିବା ଉଚିତ ନା ? ଏ ତ 'ଅନଟେସ୍ଟେଡ଼ ଫାଦର' (ଅଯୋଗ୍ୟ ପିତା) ଏବଂ 'ଅନଟେସ୍ଟେଡ଼ ମଦର' (ଅଯୋଗ୍ୟ ମାତା) । ବାପ ମୂଳା ଏବଂ ମା ଗାଜର, ଏବେ କୁହ, ପିଲାମାନେ କେମିତି ହେବେ ? କ'ଣ ସେଓ ହେବେ ? !

ଅର୍ଥାତ କଳିଯୁଗରେ ଏହି ମାତା-ପିତାଙ୍କୁ ଏ ସବୁ ଆସୁ ହିଁ ନାହିଁ । ଆଉ କେତେ ତ ଭୁଲ 'ଏନ୍‌କରେଜମେଣ୍ଟ' ଦିଅନ୍ତି । ସେମାନଙ୍କୁ ନେଇ ବୁଲିବାକୁ ଯାଆନ୍ତି । ପତ୍ନୀ କୁହେ, 'ପୁଅକୁ ଧର' ତେବେ ପତି ପୁଅକୁ ଉଠେଇ(କାଖେଇ) ନିଏ । କ'ଣ କରିବ ? ଯଦି ସେ ଟିଙ୍ଗାଳିଆ ହୋଇଥିବ ଏବଂ ନ ନିଏ ତେବେ ପତ୍ନୀ କହିବ, 'ପୁଅ କ'ଣ ଏକଲା ମୋର ? ମିଳିମିଶି ରଖିବାର ଅଛି ।' ଏମିତି-ସେମିତି କୁହେ ତେବେ ପତିକୁ କାଖେଇବାକୁ ହିଁ ପଡ଼େ, କ'ଣ ଏଥିରୁ ଛୁଟକାରା ଅଛି ? କୁଆଡ଼େ ଯିବ ସେ ? ପିଲାଙ୍କୁ କୋଳେଇ କାଖେଇ ସିନେମା ଦେଖି ଯିବା, ଦୌଡ଼ଧାପଡ଼ କରିବା । ପୁଣି ପିଲାଙ୍କୁ ସଂସ୍କାର କିପରି ମିଳିବ ?

ଜଣେ ବ୍ୟାଙ୍କ ମ୍ୟାନେଜର ମୋତେ କହିଲା, 'ଦାଦାଜୀ, ମୁଁ ତ ସ୍ତ୍ରୀ ବା ପିଲାଛୁଆଙ୍କୁ ଏକ ଅକ୍ଷର ମଧ୍ୟ କେବେ କହିନାହିଁ । ପଛେ କେତେ ବି ଭୁଲ କରନ୍ତୁ, କିଛି ବି କରନ୍ତୁ, କିନ୍ତୁ ମୁଁ କିଛି କୁହେ ନାହିଁ ।'

ସେ ଏପରି ଭାବିଥିବ ଯେ ଦାଦାଜୀ ମୋର ବହୁତ ପ୍ରଶଂସା କରିବେ । ସେ କ'ଣ ଆଶା ରଖିଥିଲା ବୁଝିଲ ନା ? ଆଉ ମୋତେ ତା' ଉପରେ ଏତେ ରାଗ ଆସିଲା ଯେ ତୋତେ କିଏ ବ୍ୟାଙ୍କ ମ୍ୟାନେଜର କଲା ? ତୋତେ ପିଲା-ଛୁଆ ସମ୍ଭାଳିବା ଆସୁନାହିଁ ଏବଂ ସ୍ତ୍ରୀ ସମ୍ଭାଳିବା ଆସୁନାହିଁ ! ଏହା ଶୁଣି ସେ ତ ଡରିଗଲା ବିଚରା । ଓଲଟା ମୁଁ ତା'କୁ କହିଲି, 'ତୁମେ ଅନ୍ତିମ ପ୍ରକାରର ବେକାର ମଣିଷ ଅଟ ! ତୁମେ ଏ ଦୁନିଆରେ କୌଣସି କାମର ନୁହଁ !' ସେ ମନରେ ଭାବୁଥିଲା ଯେ ମୁଁ ଏମିତି କହିବି ତେବେ 'ଦାଦା' ମୋତେ ବଡ଼ ପୁରସ୍କାର ଦେବେ । ପାଗଳ, ଏହାର ପୁରସ୍କାର ଦିଆଯାଉଥିବ କେଉଁଠି ? ପିଲା ଯଦି ଭୁଲ କରେ ତେବେ ଆମେ 'ତୁ ଏପରି କାହିଁକି କଲୁ? ଆଉ ଏପରି କରିବୁନି ।' ଏହିପରି ନାଟକୀୟ ରୂପରେ କହିବା ଉଚିତ; ନହେଲେ ପିଲା ବୁଝିବ ଯେ ସେ ଯାହା କିଛି କରୁଛି ତାହା 'କରେକ୍ଟ' ହିଁ ଅଟେ, କାହିଁକିନା ବାପ 'ଏକ୍ସେପ୍ଟ' କଲା । ଏପରି ନ କହିବା କାରଣରୁ ଘରେ ସବୁ ନିଃସଙ୍କୋଚ ହୋଇଗଲେଣି । ସବୁକିଛି କହିବ, କିନ୍ତୁ ନାଟକୀୟ ! ପିଲାମାନଙ୍କୁ ରାତିରେ ବସାଇ ବୁଝାଅ, କଥାବାର୍ତ୍ତା କର । ଘରର ସବୁ କୋଣରୁ ଅଳିଆ ଝାଡ଼ୁ କରିବାକୁ ପଡ଼ିବ ନା ? ପିଲାମାନଙ୍କୁ ଟିକେ ଥରାଇବା(ନାଟକୀୟ ଗାଳିଦେବା)ର ଆବଶ୍ୟକତା ଅଛି । ଏମିତିରେ ସଂସ୍କାର ତ ଥାଏ, କିନ୍ତୁ ଥରାଇବାକୁ ପଡ଼େ । ସେମାନଙ୍କୁ ଥରାଇବାରେ କିଛି ଦୋଷ ଅଛି ?

ଛୋଟ ପୁଅ-ଝିଅଙ୍କୁ ବୁଝାଇବ ଯେ ସକାଳେ ଗାଧୋଇ ପାଧୋଇ ଭଗବାନଙ୍କ ପୂଜା କର ଏବଂ ସବୁଦିନ ପ୍ରାର୍ଥନା କର ଯେ 'ମୋତେ ଏବଂ ସାରା ଜଗତକୁ ସଦ୍‌ବୁଦ୍ଧି ଦିଅ, ଜଗତର କଲ୍ୟାଣ କର ।' ସେମାନେ ଯଦି ଏତିକି କହିବେ ତେବେ ସେମାନଙ୍କୁ ସଂସ୍କାର ମିଳିଛି, ଏପରି କୁହାଯିବ ଏବଂ ମାତା-ପିତାଙ୍କ କର୍ମବନ୍ଧନ ଛୁଟିଯିବ । ଦ୍ୱିତୀୟରେ, ତୁମକୁ ପିଲାମାନଙ୍କ ଠାରୁ 'ଦାଦା ଭଗବାନଙ୍କ ଅସୀମ ଜୟ ଜୟକାର ହେଉ' ପ୍ରତିଦିନ ବୋଲାଇବା ଉଚିତ । ହିନ୍ଦୁସ୍ତାନର ପିଲାମାନେ ତ ଏତେ ସୁଧୁରି ଗଲେଣି, ଯେ ସିନେମା ବି ଯାଉନାହାନ୍ତି । ପ୍ରଥମେ ଦୁଇ-ତିନି ଦିନ ଟିକିଏ ଅଡୁଆ ଲାଗିବ । କିନ୍ତୁ ପରେ ଦୁଇ-ତିନି ଦିନ ପରେ ଅଭ୍ୟସ୍ତ ହୋଇଗଲେ, ଭିତରେ ସ୍ୱାଦ ଚାଖିଲେ, ଓଲଟା ସେମାନେ ନିଜେ ନିଜେ ମନେ ପକାଇବେ ।

## (୨) କର୍ତ୍ତବ୍ୟର ଗୀତ କ'ଣ ଗାଇବା ?

ସ୍ୱୈଚ୍ଛିକ କାର୍ଯ୍ୟର ପୁରସ୍କାର ଥାଏ । ଜଣେ ଭାଇ କର୍ତ୍ତବ୍ୟ ଯୋଗୁଁ କରିଥିବା କାର୍ଯ୍ୟର ପୁରସ୍କାର ପାଇବା ପାଇଁ ଚାହୁଁଥିଲେ ! ସାରା ସଂସାର ପୁରସ୍କାର ଖୋଜୁଛି ଯେ 'ମୁଁ ଏତେ-ଏତେ କଲି, ତୁମକୁ ଜଣା ନାହିଁ ? ତୁମକୁ ମୋର ମୂଲ୍ୟ ନାହିଁ ।' ଆରେ

ଭାଇ, ମୂଲ୍ୟ କାହିଁକି ଖୋଜୁଛୁ ? ଏ ଯାହା କିଛି କଲୁ ତାହା ତ କର୍ତ୍ତବ୍ୟ ପାଳନ କଲୁ ! ଜଣେ ବ୍ୟକ୍ତି ନିଜ ପୁଅ ସହ ଯୁକ୍ତି କରୁଥିଲା, ପରେ ମୁଁ ତା'କୁ ଗାଳିଦେଲି । ସେ କହୁଥିଲା, 'କରଜ ନେଇ ମୁଁ ତୋତେ ପଢ଼ାଇଲି । ଯଦି କରଜ ନ ନେଇଥାନ୍ତି ତେବେ କ'ଣ ତୁ ପଢ଼ି ପାରିଥାନ୍ତୁ ? ବୁଲୁଥାନ୍ତୁ ।' ଭାଇ, ଅଯଥାରେ ବାଜେକଥା କାହିଁକି କହୁଛୁ ? ଏହା ତ ତୁମର କର୍ତ୍ତବ୍ୟ ଅଟେ, ଏପରି କହିପାରିବା ନାହିଁ ! ଏ ତ ପୁଅ ସମଝ୍‌ଦାର ଅଟେ । ଯଦି 'ତୁମକୁ କିଏ ପଢ଼େଇ ଥିଲା?' ଏପରି ପଚାରିଥାନ୍ତା ତେବେ କ'ଣ ଉତ୍ତର ଦେଇଥାନ୍ତ ? ଏମିତି ପାଗଳଙ୍କ ପରି କହି ଚାଲନ୍ତି ନା ଲୋକେ ? ମୂର୍ଖ ଲୋକ, ନିର୍ବୋଧ, କିଛି ଜଣା ହିଁ ନାହିଁ ।

ପିଲାମାନଙ୍କ ପାଇଁ ସବୁକିଛି କରିବା ଉଚିତ । କିନ୍ତୁ ପିଲାମାନେ ଯଦି କୁହନ୍ତି ଯେ 'ନା ବାପା ଏବେ ବହୁତ ହୋଇଗଲା ।' ତଥାପି ବାପା ତା'କୁ ଛାଡ଼େ ନାହିଁ, ତେବେ କ'ଣ ହେବ ? ପିଲାମାନେ ଲାଲ ପତାକା ଦେଖାଇବେ ତେବେ କ'ଣ ଆମକୁ ବୁଝିବା ଉଚିତ୍ ନୁହେଁ ? ତୁମକୁ କ'ଣ ଲାଗୁଛି ?

ପୁଣି ସେ ଯଦି କୁହେ ଯେ ମୋତେ ବ୍ୟବସାୟ କରିବାର ଅଛି, ତେବେ ଆମକୁ ବ୍ୟବସାୟ ପାଇଁ କିଛି ରାସ୍ତା କରିଦେବା ଉଚିତ । ଏଥିରେ ବେଶୀ ଗଭୀରକୁ ଯିବାବାଲା ବାପା ମୂର୍ଖ ଅଟନ୍ତି । ଯଦି ସେ ଚାକିରୀରେ ଲାଗି ଯାଇଥିବ ତେବେ ଆମ ପାଖରେ ଯାହା କିଛି ଥିବ, ତାହାକୁ ଗଣ୍ଠିବାନ୍ଧି ରଖିଦେବା ଉଚିତ । କେତେବେଳେ ଅସୁବିଧାରେ ଥିବ, ସେତେବେଳେ ହଜାର-ଦୁଇ ହଜାର ପଠାଇବା ଉଚିତ । କିନ୍ତୁ ଏ ତ ସବୁବେଳେ ପଚାରି ଚାଲୁଥାଏ । ସେତେବେଳେ ପୁଅ କୁହେ 'ତୁମକୁ ମନା କରୁଛି ନା ଯେ ମୋ କଥାରେ ଦଖଲ କରନାହିଁ ।' ସେତେବେଳେ ବାପ କ'ଣ କୁହେ, 'ଏବେ ତା'ର ବୁଦ୍ଧି ହୋଇନାହିଁ, ସେଥିପାଇଁ ଏପରି କହୁଛି ।' ଆରେ, ଏହା ତ ତୁମେ ନିବୃତ୍ତ ହୋଇଗଲ; ଭଲ ହେଲା ଜଞ୍ଜାଳ ଛୁଟିଲା । ପୁଅ ନିଜେ ହିଁ ତୁମକୁ ମନା କରୁଛି ନା !

**ପ୍ରଶ୍ନକର୍ତ୍ତା :** ଉଚିତ ରାସ୍ତା କେଉଁଟା ? ଆମେ ସେଠି ପିଲା ସମ୍ଭାଳିବୁ ନା ଆମ କଲ୍ୟାଣ ପାଇଁ ସତ୍‌ସଙ୍ଗରେ ଆସିବୁ ?

**ଦାଦାଶ୍ରୀ :** ପିଲାମାନେ ତ ଆପେ ଆପେ ସମ୍ଭଳୁଛନ୍ତି । ତୁମେ ସେମାନଙ୍କୁ କ'ଣ ସମ୍ଭାଳିବ ? ନିଜ କଲ୍ୟାଣ କରିବା ତାହା ହିଁ ମୁଖ୍ୟ ଧର୍ମ । ନହେଲେ ଏ ପିଲାମାନେ ତ ସମ୍ଭାଳିହୋଇ ଅଛନ୍ତି ! ପିଲାମାନଙ୍କୁ କ'ଣ ତୁମେ ବଡ଼ କରୁଛ ? ବଗିଚାରେ ଗୋଲାପର ଚାରା ଲଗାଇଥିବ ତେବେ ରାତିରେ ବଢ଼ନ୍ତି ନା ବଢ଼ନ୍ତି ନାହିଁ ?

ତାହା ତ ଆମେ ମାନି ନେଉ ଯେ ମୋ ଗୋଲାପ, କିନ୍ତୁ ଗୋଲାପ ତ ଏଇୟା ବୁଝେ ଯେ ମୁଁ ନିଜେ ହିଁ ଅଟେ । ଅନ୍ୟ କାହାର ନୁହେଁ । ସମସ୍ତେ ନିଜର ସ୍ୱୟଂର ସ୍ୱାର୍ଥରୁ ପ୍ରେରିତ ଅଟନ୍ତି । ଏହା ତ ଆମେ ପାଗଳା ଅହଂକାର କରୁଛେ । ପାଗଳାମି କରୁଛେ ।

**ପ୍ରଶ୍ନକର୍ତ୍ତା :** ଯଦି ଆମେ ଗୋଲାପକୁ ପାଣି ନଦେବୁ, ତେବେ ଗୋଲାପ ତ ଝାଉଁଳି ଯିବ ।

**ଦାଦାଶ୍ରୀ :** ନ ଦେବୁ, ଏପରି ହୁଏ ହିଁ ନାହିଁ ନା ! ପୁଅକୁ ଭଲ ଭାବରେ ନ ରଖିବା ତେବେ ପୁଅ କାମୁଡ଼ିବାକୁ ଦୌଡ଼ିବ ନହେଲେ ପୁଣି ପଥର ମାରିବ ।

ଏବେ ସାଂସାରିକ କର୍ତ୍ତବ୍ୟ ବହନ କରିବା ସହିତ ଧର୍ମ କାର୍ଯ୍ୟର ସମନ୍ୱୟ କିପରି ହେବ ? ପୁଅ ଓଲଟା କହୁଥିବ ତେବେ ମଧ୍ୟ ଆମେ ନିଜର ଧର୍ମ ନ ଭୁଲି, କର୍ତ୍ତବ୍ୟ ପୁରା କରିବା ଉଚିତ । ତୁମର ଧର୍ମ କ'ଣ ? ପୁଅକୁ ପାଳି-ପୋଷି ବଡ଼ କରିବା, ତା'କୁ ଠିକ ରାସ୍ତାରେ ଚଲାଇବା । ଏବେ ସେ ତେଢ଼ା କହୁଛି ଏବଂ ତୁମେ ବି ତେଢ଼ା କହିବ ତେବେ ପରିଣାମ କ'ଣ ହେବ ? ସେ ବିଗିଡ଼ି ଯିବ । ଏଣୁ ପ୍ରେମର ସହ ତା'କୁ ପୁଣି ବୁଝାଇବା ଉଚିତ ଯେ ବସ ଭାଇ, ଦେଖ, ଏମିତି, ସେମିତି । ଅର୍ଥାତ ସବୁ କର୍ତ୍ତବ୍ୟରେ ଧର୍ମ ରହିବା ଉଚିତ । ଧର୍ମ ନ ରହିବ ତେବେ ତା' ଜାଗାରେ ଅଧର୍ମ ପଶିଯିବ । କୋଠରୀ ଖାଲି ରହିବ ନାହିଁ । ଏବେ ଏଠାରେ ଆମେ ଘର ଖାଲି ରଖି ଛାଡ଼ି ଦେଇଥିବା ତେବେ ଲୋକେ ତାଲା ଖୋଲି ପଶିଯିବେ ନା ନାହିଁ ?

ବାସ୍ତବରେ ଘରେ ସ୍ତ୍ରୀ ମାନଙ୍କର ପ୍ରକୃତ ଧର୍ମ କ'ଣ ? ଆଖପାଖରେ ସବୁ ଲୋକ ଏପରି କହିବେ ଯେ ବାଃ ! କ'ଣ କହିବା ! କର୍ତ୍ତବ୍ୟ ଏମିତି ପାଳିବା ଯେ ଆଖପାଖ ଲୋକେ ଖୁସି ହୋଇଯିବେ । ଏଣୁ ସ୍ତ୍ରୀର ପ୍ରକୃତ ଧର୍ମ ଏହା ଯେ ପିଲାମାନଙ୍କର ଲାଳନପାଳନ କରିବା, ସେମାନଙ୍କୁ ଭଲ ସଂସ୍କାର ଦେବା; ପତିର ସଂସ୍କାର କମ୍ ଥିବ ତେବେ ସଂସ୍କାର ଛିଞ୍ଚିବା । ସବୁକିଛି ନିଜର ସୁଧାରିବା, ଏହାର ନାମ ଧର୍ମ । କ'ଣ ସୁଧାରିବାକୁ ପଡ଼ିବ ନାହିଁ ?

କିଛି ଲୋକ ତ କ'ଣ କରନ୍ତି? ଭଗବାନଙ୍କ ଭକ୍ତିରେ ତନ୍ମୟ ରୁହନ୍ତି, କିନ୍ତୁ ପିଲାଙ୍କୁ ଦେଖି ଚିଡ଼ନ୍ତି । ଯେଉଁମାନଙ୍କ ମଧ୍ୟରେ ଭଗବାନ ପ୍ରକଟ ହୋଇଛନ୍ତି ଏପରି ପିଲାଙ୍କୁ ଦେଖି ଚିଡ଼େ ଏବଂ ସେଠି ଭଗବାନଙ୍କ ଭକ୍ତି କରି ଚାଲୁଥାଏ, ତା'ର ନାମ ଭକତ ! ଏହି ପିଲାମାନଙ୍କ ଉପରେ ଚିଡ଼ିବା ଉଚିତ କି ? ଆରେ ! ଏମାନଙ୍କ ଭିତରେ ତ ପ୍ରକଟ ଭଗବାନ ଅଛନ୍ତି !

## (୩) ଝଗଡ଼ା କରନ୍ତି ନାହିଁ, ପିଲାଙ୍କ ଉପସ୍ଥିତିରେ...

ଯଦି ଆମେ ମାଂସାହାର ନ କରିବା, ମଦ ନ ପିଇବା ଏବଂ ଘରେ ପତ୍ନୀ ସହ ଝଗଡ଼ା ନ କରିବା ତେବେ ପିଲାମାନେ ଦେଖନ୍ତି ଯେ ପାପାଜୀ ବହୁତ ଭଲ । ଅନ୍ୟମାନଙ୍କ ପାପା-ମମ୍ମୀ ଝଗଡ଼ା କରନ୍ତି, ମୋ ମମ୍ମୀ-ପାପା ଝଗଡ଼ା କରୁନାହାନ୍ତି । ଏତିକି ଦେଖିବେ ତେବେ ପୁଣି ପିଲାମାନେ ବି ଶିଖନ୍ତି ।

ପତି ସବୁଦିନ ପତ୍ନୀ ସହ ଝଗଡ଼ା କରେ ତେବେ ପିଲାମାନେ ଏମିତି ଦେଖୁଥାନ୍ତି । କହିବେ 'ଏ ପାପା ଏମିତି ହିଁ ଅଟନ୍ତି' । କାହିଁକିନା ଏତିକି ଛୋଟ ହେଉ ପଛେ ତଥାପି ନ୍ୟାୟ କରିବାବାଲା ନ୍ୟାୟାଧୀଶ ବୁଦ୍ଧି ତାଙ୍କଠାରେ ଥାଏ । ଝିଅମାନଙ୍କଠାରେ ନ୍ୟାୟାଧୀଶ ବୁଦ୍ଧି କମ ଥାଏ । ଝିଅମାନେ ସବୁବେଳେ ତାଙ୍କ ମା'ର ହିଁ ପକ୍ଷ ନିଅନ୍ତି । କିନ୍ତୁ ଏ ପୁଅ ତ ନ୍ୟାୟାଧୀଶ ବୁଦ୍ଧିବାଲା, ଜାଣନ୍ତି ଯେ ପାପାଙ୍କ ଦୋଷ ଅଛି ! ପୁଣି ଦୁଇ-ଚାରି ଜଣକୁ ପାପାଙ୍କ ଦୋଷ ବତାଇ-ବତାଇ, *ନିଶ୍ଚୟ*(ସ୍ଥିର) ବି କରେ ଯେ ବଡ଼ ହୋଇ ଶିଖେଇବି ! ପରେ ବଡ଼ ହେବା ପରେ ସେହିପରି କରେ ମଧ୍ୟ । ତୋ ଅମାନତ ଓଲଟା ପୁଣି ତୋତେ !

ପିଲାମାନଙ୍କ ଉପସ୍ଥିତିରେ ଲଢ଼ିବା ଉଚିତ ନୁହେଁ । ତୁମେ ସଂସ୍କାରୀ ହେବା ଉଚିତ । ତୁମର ଭୁଲ ଥିବ ତଥାପି ପତ୍ନୀ କୁହେ, 'କିଛି କଥା ନାହିଁ' । ଆଉ ତା'ର ଭୁଲ ଥିବ ତେବେ ତୁମେ କୁହ, 'କିଛି କଥା ନାହିଁ' । ପିଲାମାନେ ଯେବେ ଏପରି ଦେଖନ୍ତି ତେବେ ଅଲରାଇଟ୍(ସଠିକ) ହେବାକୁ ଲାଗନ୍ତି । ଆଉ ଯଦି ଲଢ଼ିବାର ଥିବ ତେବେ ଅପେକ୍ଷା କରିବ, ଯେତେବେଳେ ପିଲାମାନେ ସ୍କୁଲ ଚାଲିଯିବେ, ସେତେବେଳେ ଯେତେ ଲଢ଼ିବାର ଥିବ ସେତେ ଲଢ଼ିବ । କିନ୍ତୁ ପିଲାଙ୍କ ଉପସ୍ଥିତିରେ ଏପରି ଲଢ଼େଇ-ଝଗଡ଼ା ହେବ, ତେବେ ସେମାନେ ଦେଖନ୍ତି ଏବଂ ପୁଣି ସେମାନଙ୍କ ମନରେ ପିଲାଦିନରୁ ପାପା ଏବଂ ମମ୍ମୀ ପାଇଁ ବିରୋଧୀ ଭାବନା ଜନ୍ମ ନେବାକୁ ଲାଗେ । ସେମାନଙ୍କର ସକାରାତ୍ମକ ଭାବ ଦୂର ହୋଇ ନକାରାତ୍ମକ ଆରମ୍ଭ ହୋଇ ହିଁ ଯାଏ । ଅର୍ଥାତ ଆଜିକାଲି ପିଲାଙ୍କୁ ବିଗାଡ଼ିବାବାଲା ମାତା-ପିତା ହିଁ ଅଟନ୍ତି !

ଯଦି ଲଢ଼ିବାକୁ ଥିବ ତେବେ ଏକାନ୍ତରେ ଲଢ଼ିବ, ପିଲାଙ୍କ ଉପସ୍ଥିତିରେ ନୁହେଁ । ଏକାନ୍ତରେ କବାଟ ବନ୍ଦ କରି କାଠ ଫାଳିଆ ଧରି ଦୁହିଁଙ୍କୁ ସାମ୍ନା-ସାମ୍ନି ଦାଣ୍ଡିଆ ଖେଳିବାର ଅଛି ତେବେ ଖେଳ ।

ଦାମିକା ଆମ୍ବ ଆଣିଥିବ ଏବଂ ସେହି ଆମ୍ବର ରସ, ସାଥିରେ ରୁଟି ସବୁ ପ୍ରସ୍ତୁତ କରି ପତ୍ନୀ ପରଷିଲା ଏବଂ ଭୋଜନ ଆରମ୍ଭ ହେଲା । ଅଳ୍ପ ଖାଇଲା ଏବଂ ଯେମିତି

କଢ଼ିରେ ହାତ ମାରିଲା, ଟିକିଏ ଲୁଣିଆ ଲାଗିଲା କି ନାହିଁ ଡାଇନିଙ୍ଗ ଟେବଲ୍ ବାଡ଼େଇ କୁହେ, 'କଢ଼ି ଲୁଣିଆ କରିଦେଲୁ।' ଆରେ! ଚୁପ ଚାପ ଖାଇ ନେ ନା! ଘରର ମାଲିକ, ସେଠି କେହି ତା' ଉପରେ ନାହିଁ। ସେ ନିଜେ ହିଁ ବୋସ୍, ସେଥିପାଇଁ ଧମକ-ଚମକ ଆରମ୍ଭ କରିଦିଏ। ପିଲାମାନେ ଡରିଯାନ୍ତି ଯେ ପାପା ଏମିତି ପାଗଳ କାହିଁକି ହୋଇଗଲେ ? କିନ୍ତୁ କହି ପାରନ୍ତି ନାହିଁ। କାହିଁକିନା ବିଚରାମାନେ ଦବି ହୋଇ ଅଛନ୍ତି, କିନ୍ତୁ ମନରେ ଅଭିପ୍ରାୟ ବାନ୍ଧି ନିଅନ୍ତି ଯେ ପାପା ପାଗଳ ଲାଗୁଛନ୍ତି।

ଅତଃ ପିଲାମାନେ ସବୁ ବିରକ୍ତ ହୋଇଗଲେଣି। ସେମାନେ କୁହନ୍ତି ଯେ ଫାଦର-ମଦର ବିବାହ କରିଛନ୍ତି, ତାଙ୍କର ସୁଖ( !) ଦେଖି ଆମେ ବିରକ୍ତ ହୋଇଗଲୁଣି। ମୁଁ ପଚାରିଲି, 'କାହିଁକି ? କଣ ଦେଖିଲୁ ?', ତେବେ ସେମାନେ କୁହନ୍ତି ଯେ ପ୍ରତିଦିନ କ୍ଲେଶ। ଏଣୁ ଆମେ ବୁଝିଗଲୁଣି ଯେ ବିବାହ କଲେ ଦୁଃଖ ମିଳେ। ଏବେ ଆମକୁ ବିବାହ କରିବାର ନାହିଁ।

## (୪) ଅନସାର୍ଟିଫାଏଡ଼ ଫାଦର୍ସ ଏଣ୍ଡ ମଦର୍ସ

ଜଣେ ବାପ କୁହେ, 'ଏ ପିଲାମାନେ ସବୁ ମୋର ବିରୋଧୀ ହୋଇ ଗଲେଣି।' ମୁଁ କହିଲି 'ତୁମର ଯୋଗ୍ୟତା ନାହିଁ ଏହା ସ୍ୱଷ୍ଟ ହୋଇଯାଉଛି'। ଯଦି ତୁମର ଯୋଗ୍ୟତା ଥିବ ତେବେ ପିଲାମାନେ କାହିଁକି ବିରୋଧ କରିବେ ? ଏଣୁ ଏହିପରି ନିଜର ମର୍ଯ୍ୟାଦା ନଷ୍ଟ କରନାହିଁ।

ଆଉ ପିଲାମାନଙ୍କୁ ଧମକାଇ ଚାଲିବା ତେବେ ବିଗିଡ଼ି ଯାଆନ୍ତି। ସେମାନଙ୍କୁ ସୁଧାରିବାକୁ ଥିବ ତେବେ ମୋ ପାଖକୁ ଡାକି କିଛି କଥାବାର୍ତ୍ତା କରାଇବ ତେବେ ସୁଧୁରିଯିବେ!

ଏଥିପାଇଁ ମୁଁ ପୁସ୍ତକରେ ଲେଖିଛି ଯେ 'ଅନକ୍ୱାଲିଫାଏଡ଼ ଫାଦର୍ସ ଏଣ୍ଡ ଅନକ୍ୱାଲିଫାଏଡ଼ ମଦର୍ସ (ଯୋଗ୍ୟତା ବିହୀନ ମାତା-ପିତା), ତେବେ ପିଲାମାନେ ମଧ୍ୟ ସେହିପରି ହୋଇଯିବେ ନା! ସେଥିପାଇଁ ମୋତେ କହିବାକୁ ପଡ଼ିଲା, ଫାଦର ହେବାର ଯୋଗ୍ୟତାର ସାର୍ଟିଫିକେଟ ନେବା ପରେ ବାହା ହେବା ଉଚିତ।

ଏମାନଙ୍କୁ ତ ଜୀବନ ଜୀଇଁବା ବି ଆସୁନାହଁ, କିଛି ବି ଆସୁନାହିଁ! ଏହି ସଂସାର-ବ୍ୟବହାର କିପରି ଚଳାଇବା, ତାହା ମଧ୍ୟ ଆସୁନାହିଁ। ଏଥିପାଇଁ ପୁଣି ପିଲାମାନଙ୍କର ଧୁଲାଇ କରେ(ମାଡ଼ ମାରେ)! ଆରେ ସେମାନଙ୍କୁ ପିଟୁଛୁ ତ କ'ଣ ସେମାନେ କପଡ଼ା ଅଟନ୍ତି, ଯେ ଧୋଇ ଚାଲିଛୁ? ପିଲାଙ୍କୁ ଏହିପରି ସୁଧାରିବା,

ମାରପିଟ କରିବା, ଏହା କେଉଁଠିକାର ରାସ୍ତା? ଯେମିତି ପାମ୍ପଡ଼ର ଅଟା ଦଳୁଛି! ହେମଦସ୍ତାରେ ପାମ୍ପଡ଼ର ଅଟା ଚକଟନ୍ତି, ସେହିପରି ଜଣେ ଲୋକକୁ ଧୁଲାଇ କରୁଥିବାର ମୁଁ ଦେଖିଛି।

ମାତା-ପିତା ତ ସେମାନଙ୍କୁ କୁହାଯାଏ ଯେ ଯଦି ପୁଅ ଖରାପ ରାସ୍ତାରେ ଚାଲି ଯାଇଥିବ, ତଥାପି ଦିନେ ଯେବେ ମାତା-ପିତା କୁହନ୍ତି, 'ପୁଅ, ଏହା ଆମକୁ ଶୋଭା ଦେଉନାହିଁ, ଏ ତୁ କ'ଣ କଲୁ?' ତେବେ ପରଦିନ ସବୁ ବନ୍ଦ କରିଦିଏ। ଏପରି ପ୍ରେମ ଅଛି ହିଁ କେଉଁଠି? ଏମାନେ ତ ବିନା ପ୍ରେମର ମାତା-ପିତା! ଏ ଜଗତ ପ୍ରେମଦ୍ୱାରା ହିଁ ବଶ ହୁଏ। ଏହି ମାତା-ପିତାଙ୍କୁ ପିଲାମାନଙ୍କ ଉପରେ କେତେ ଭଲ ପାଇବା ଅଛି? ଗୋଲାପର ଚାରା ଉପରେ ମାଳିକୁ ଯେତିକି ଥାଏ ସେତିକି! ଏମାନଙ୍କୁ ମାତା-ପିତା କିପରି କହିପାରିବା?

**ପ୍ରଶ୍ନକର୍ତ୍ତା :** ପିଲାମାନଙ୍କ ପାଠପଢ଼ା ପାଇଁ କିମ୍ବା ସଂସ୍କାର ପାଇଁ ଆମକୁ କିଛି ବି ଭାବିବା ଉଚିତ ନୁହେଁ?

**ଦାଦାଶ୍ରୀ :** ଭାବିବାରେ ଅସୁବିଧା ନାହିଁ।

**ପ୍ରଶ୍ନକର୍ତ୍ତା :** ପାଠପଢ଼ା ତ ସ୍କୁଲରେ ହୁଏ, କିନ୍ତୁ ସଂସ୍କାର ଏବଂ ଚାରିତ୍ର କିପରି ଦେବୁ?

**ଦାଦାଶ୍ରୀ :** ଗଢ଼ିବା କାମ ବଣିଆକୁ ସମର୍ପି ଦିଅ। ଯିଏ ସେମାନଙ୍କୁ ଗଢ଼ିବାବାଲା ଥିବେ ସେମାନେ ଗଢ଼ିବେ। ଯେପର୍ଯ୍ୟନ୍ତ ପୁଅ ପନ୍ଦର ବର୍ଷର ଅଛି, ସେପର୍ଯ୍ୟନ୍ତ ତା'କୁ କହିପାରିବା, ସେପର୍ଯ୍ୟନ୍ତ ଆମେ ଯେପରି, ତା'କୁ ସେହିପରି ଗଢ଼ିଦେବା। ପରେ ତା' ସ୍ତ୍ରୀ ତା'କୁ ଗଢ଼ିବ। ଏ ତ ପିଲାଙ୍କୁ ଗଢ଼ିବା ଆସେ ନାହିଁ, ତଥାପି ଲୋକେ ଗଢୁଛନ୍ତି! ଏହାଦ୍ୱାରା ଗଢ଼ଣ ଠିକରେ ହେଉନାହିଁ। ମୂର୍ତ୍ତି ଭଲ ହେଉନାହିଁ। ନାକ ଅଢ଼େଇ ଇଞ୍ଚ ଜାଗାରେ ସାଢ଼େ ଚାରି ଇଞ୍ଚର କରିଦିଏ! ପରେ ଯେବେ ପୁଅର ସ୍ତ୍ରୀ ଆସିବ, ସେ ତା' ନାକକୁ କାଟି ଠିକ୍ କରିବା ପାଇଁ ଯିବ, ସେତେବେଳେ ପୁଅ ମଧ୍ୟ ତା' ନାକ କାଟିବା ପାଇଁ ଯିବ। ଏହିପରି ଦୁହେଁ ମୁହାଁମୁହିଁ ହୋଇଯିବେ।

**ପ୍ରଶ୍ନକର୍ତ୍ତା :** 'ସାର୍ଟିଫାଏଡ଼' ଫାଦର-ମଦର ଙ୍କ ପରିଭାଷା କ'ଣ?

**ଦାଦାଶ୍ରୀ :** 'ସାର୍ଟିଫାଏଡ଼' ମାତା-ପିତା, ଅର୍ଥାତ ଆମ ପିଲାମାନେ ଆମ କହିବା ଅନୁସାରେ ଚାଲିବେ। ନିଜ ପିଲାମାନେ ନିଜ ଉପରେ ଶ୍ରଦ୍ଧା ନ ରଖିବେ, ମାତା-ପିତାଙ୍କୁ ହଇରାଣ କରିବେ, ଏପରି ମାତା-ପିତା 'ଅନସାର୍ଟିଫାଏଡ଼' ହିଁ କୁହାଯିବେ ନା?

ନହେଲେ ପିଲାମାନେ ଏପରି ନୁହନ୍ତି, ପିଲାମାନେ ଆଜ୍ଞାକାରୀ ଅଟନ୍ତି । ଏ ତ ମାତା-ପିତାଙ୍କର ହିଁ ଠିକଣା ନାହିଁ । କ୍ଷେତ ଯେମିତି, ବୀଜ ଯେମିତି, ମାଲ(ଫଳ) ମଧ୍ୟ ସେମିତି ! ଉପରୁ କୁହେ ଯେ 'ମୋ ପିଲା ମହାବୀର ହେବେ ।' ଏମିତି ମହାବୀର ହେଉଥିବେ ? ମହାବୀର ର ମା ତ' କିଭଳି ହେବା ଉଚିତ ! ! ବାପ ଏମିତି-ସେମିତି ହେବ ତେବେ ଚଳିବ, କିନ୍ତୁ ମା ତ କିଭଳି ହୋଇଥିବ ? !

ଏଥିରୁ କିଛି କଥା ତୁମକୁ ପସନ୍ଦ ଆସିଲା ?

**ପ୍ରଶ୍ନକର୍ତ୍ତା :** ଏହି କଥା ଯଦି ପସନ୍ଦ ଆସେ, ତେବେ ତାହାର ପ୍ରଭାବ ଆପେ ଆପେ ହୋଇଯାଏ ।

**ଦାଦାଶ୍ରୀ :** ବହୁତ ଲୋକ ପୁଅକୁ କୁହନ୍ତି ଯେ, 'ତୁ ମୋ କଥା ମାନୁନାହୁଁ ।' ମୁଁ କହିଲି 'ତୁମ ବାଣୀ ତା'କୁ ପସନ୍ଦ ହେଉନାହିଁ, ଯଦି ପସନ୍ଦ ହେଉଥିବ ତେବେ ଆପେଆପେ ପ୍ରଭାବ ପଡ଼ିଯିବ ।' ଆଉ ବାପ କୁହେ, 'ତୁ ମୋ କଥା ମାନୁନାହୁଁ ।' ଆରେ !, ତୋତେ ବାପ ହେବା ଆସିଲା ନାହିଁ । ଏହି କଳିଯୁଗରେ ଲୋକଙ୍କ ଦଶା ତ ଦେଖ ! ନହେଲେ ସତ୍ୟଯୁଗରେ ତ କିଭଳି ମାତା-ପିତା ଥିଲେ !

ମୁଁ ଏହା ଶିଖାଇବାକୁ ଚାହୁଁଛି ଯେ ତୁମେ ଏପରି କୁହ ଯେ ପିଲାମାନଙ୍କୁ ତୁମ କଥାରେ ଇଣ୍ଟ୍ରେଷ୍ଟ(ରୁଚି) ଆସିବ, ସେତେବେଳେ ସେମାନେ ତୁମ କହିବା ଅନୁସାରେ ହିଁ କରିବେ । ତୁମେ ମୋତେ କହିଲ ନା ଯେ ମୋ କଥା ତୁମକୁ ପସନ୍ଦ ଆସୁଛି । ତେବେ ତୁମଦ୍ୱାରା ଏତିକି ହୋଇପାରିବ ।

**ପ୍ରଶ୍ନକର୍ତ୍ତା :** ଆପଣଙ୍କ ବାଣୀର ପ୍ରଭାବ ଏପରି ପଡୁଛି ଯେ ବୁଦ୍ଧି ଯେଉଁ ପଜ୍ଲର ସମାଧାନ ନ ଖୋଜିପାରେ, ତାହାର ସମାଧାନ ଏହି ବାଣୀ ଆଣି ପାରେ ।

**ଦାଦାଶ୍ରୀ :** ହୃଦୟସ୍ପର୍ଶୀ ବାଣୀ । ତାହା ମଦରଲୀ(ମାତୃତ୍ୱଭରା) କୁହାଯାଏ । ହୃଦୟସ୍ପର୍ଶୀ ବାଣୀ ଯଦି କେହି ବାପ ନିଜ ପୁଅକୁ କୁହେ, ତେବେ ସେ ସାର୍ଟିଫାଏଡ଼ ଫାଦର କୁହାଯିବ !

**ପ୍ରଶ୍ନକର୍ତ୍ତା :** ପିଲାମାନେ ଏତେ ସହଜରେ ମାନନ୍ତି ନାହିଁ ।

**ଦାଦାଶ୍ରୀ :** ତେବେ କ'ଣ ହିଟଲରୀଜମ୍(ଜବରଦସ୍ତି)ଦ୍ୱାରା ମାନନ୍ତି ? ଯଦି ହିଟଲରୀଜମ୍ କରିବା ତେବେ ତାହା ହେଲ୍ପଫୁଲ୍(ସହାୟକ) ନୁହେଁ ।

**ପ୍ରଶ୍ନକର୍ତ୍ତା :** ସେମାନେ ମାନନ୍ତି କିନ୍ତୁ ବହୁତ ବୁଝାଇବା ପରେ ।

**ଦାଦାଶ୍ରୀ :** ସେଥିରେ କୌଣସି ଅସୁବିଧା ନାହିଁ । ତାହା ନ୍ୟାୟସଙ୍ଗତ

ଅଟେ । ବହୁତ ବୁଝାଇବାକୁ ପଡୁଛି, ଏହାର କାରଣ କ'ଣ ? କାରଣ ତୁମେ ନିଜେ ବୁଝି ପାରୁନାହଁ, ସେଥିପାଇଁ ବହୁତ ବୁଝାଇବାକୁ ପଡୁଛି ! ସମଝଦାର ବ୍ୟକ୍ତିକୁ ଥରେ ବୁଝାଇବାକୁ ପଡ଼େ । ପରେ ଆମେ ବୁଝିଯିବାନି ? ବହୁତ ବୁଝାଇବାକୁ ପଡୁଛି, କିନ୍ତୁ ପରେ ବୁଝି ଯାଉଛନ୍ତି ନା ?

**ପ୍ରଶ୍ନକର୍ତ୍ତା :** ହଁ ।

**ଦାଦାଶ୍ରୀ :** ତାହା ସବୁଠୁ ଭଲ ରାସ୍ତା । ଏ ତ ମାରି-ପିଟି ବୁଝାଇବାକୁ ଚାହୁଁଛନ୍ତି । ଏମିତି ବାପ ହେଇ ବସିଗଲା, ଯେମିତି ଆଜି ପର୍ଯ୍ୟନ୍ତ ଦୁନିଆରେ କେବେ କେହି ବାପ ହୋଇନଥିଲା ! ଅର୍ଥାତ ଯେଉଁମାନେ ବୁଝାଇ-ସୁଝାଇ ଏହିପରି କାମ ନିଅନ୍ତି, ସେମାନଙ୍କୁ ମୋତେ ଅନକ୍ୱାଲିଫାଏଡ଼ (ଅକ୍ଷମ) କହିବାର ନାହିଁ ।

'ବାପ ହେବା' ସେହି ସଦ୍‌ବ୍ୟବହାର କିପରି ହେବା ଉଚିତ? ପୁଅ ସହିତ ଦାଦାଗୀରୀ ତ ନୁହେଁ, କିନ୍ତୁ କଠୋରତା ମଧ୍ୟ ନ ହେବା ଉଚିତ, ସେ ବାପ କୁହାଯାଏ ।

**ପ୍ରଶ୍ନକର୍ତ୍ତା :** ଯେବେ ପିଲାମାନେ ହଇରାଣ କରନ୍ତି, ସେତେବେଳେ ବାପକୁ କ'ଣ କରିବା ଉଚିତ ? ସେତେବେଳେ ମଧ୍ୟ ବାପକୁ କଠୋରତା ନ ଦେଖାଇବା ଉଚିତ ?

**ଦାଦାଶ୍ରୀ :** ବାପ ଯୋଗୁଁ ହିଁ ପିଲାମାନେ ହଇରାଣ କରନ୍ତି । ବାପଠାରେ ଅଯୋଗ୍ୟତା ଥିବ, ତେବେ ପିଲାମାନେ ହଇରାଣ କରନ୍ତି । ଏହି ଦୁନିଆର କାନୁନ୍ ଏହିପରି ହିଁ ଅଟେ । ବାପଠାରେ ଯୋଗ୍ୟତା ନଥିବ ତେବେ ପିଲାମାନେ ହଇରାଣ ନ କରି ରହିବେ ନାହିଁ ।

**ପ୍ରଶ୍ନକର୍ତ୍ତା :** ପୁଅ ବାପ କଥା ନ ମାନିଲେ କ'ଣ କରିବୁ ?

**ଦାଦାଶ୍ରୀ :** 'ନିଜର ଭୁଲ ଅଟେ' ଏପରି ବୁଝି ଛାଡ଼ିଦେବ ! ନିଜର ଭୁଲ ଥିବ ସେଥିପାଇଁ ମାନୁ ନାହାନ୍ତି ନା ! ବାପ ହେବା ଯଦି ଆସୁଥିବ, ପୁଅ ତା' କଥା ନମାନେ ଏପରି ହେଉଥିବ ? କିନ୍ତୁ ବାପ ହେବା ଆସୁ ହିଁ ନାହିଁ ନା !

**ପ୍ରଶ୍ନକର୍ତ୍ତା :** ଥରେ ଫାଦର ହୋଇଯିବା ତେବେ ପିଲ୍ଲେ(କୁକୁର ଛୁଆ) ଛାଡ଼ିବେ କି ?

**ଦାଦାଶ୍ରୀ :** ଛାଡୁଥିବେ କେଉଁଠି ? ପିଲ୍ଲେ ତ ସାରା ଜୀବନ 'ଡଗ୍' ଏବଂ 'ଡାଗୀନ୍' ଦୁହିଙ୍କୁ ଦେଖୁଥାନ୍ତି ଯେ ଇଏ ଭୌଁ-ଭୌଁ କରେ ଏବଂ ସେ(ଡାଗୀନ୍) କାମୁଡୁ ଥାଏ । 'ଡଗ୍' ଭୌଁ-ଭୌଁ ନ କରି ରୁହେ ନାହିଁ, କିନ୍ତୁ ଶେଷରେ ଦୋଷ ସେହି

'ଡଗ୍' ର ହିଁ ବାହାରେ । ପିଲାମାନେ ତାଙ୍କ ମା'ର ହିଁ ପକ୍ଷ ନିଅନ୍ତି । ଏଥିପାଇଁ ମୁଁ ଜଣେ ବ୍ୟକ୍ତିକୁ କହିଥିଲି, 'ବଡ଼ ହୋଇ ଏ ପିଲାମାନେ ତୋତେ ମାରିବେ । ଏଣୁ ଘରବାଲୀ ସହ ସିଧା ହୋଇ ରହିବୁ ।' ଏ ତ ପିଲାମାନେ ଦେଖୁଥାନ୍ତି ସେହି ସମୟରେ, ଯେପର୍ଯ୍ୟନ୍ତ ତାଙ୍କ ବଶରେ ନଥିବ ଆଉ ଯେବେ ବଶରେ ହୋଇଯିବ, ସେତେବେଳେ ଘରେ ବନ୍ଦ କରି ପିଟନ୍ତି । ଲୋକଙ୍କ ସହ ଏପରି ମଧ୍ୟ ହୋଇଛି ! ପୁଅ ସେହିଦିନ ମନରେ ସ୍ଥିର କରିନିଏ ଯେ ବଡ଼ ହୋଇ ମୁଁ ବାପକୁ ସବୁ ଫେରେଇବି । ମୋର ଯାହା ବି ହେଉ କିନ୍ତୁ ତାଙ୍କୁ ପାଠ ତ ପଢ଼େଇବି ନିଶ୍ଚୟ, ଏପରି ଠାଣି ନିଏ । ଏହା ମଧ୍ୟ ବୁଝିବା ପରି ଅଟେ ନା ?

**ପ୍ରଶ୍ନକର୍ତ୍ତା :** କ'ଣ ପୁରା ଦୋଷ ବାପର ହିଁ ଅଟେ ?

**ଦାଦାଶ୍ରୀ :** ବାପର ହିଁ ! ବାପର ହିଁ ଦୋଷ ଅଟେ । ବାପଠାରେ ବାପ ହେବାର ଯୋଗ୍ୟତା ନଥିବ, ସେଥିପାଇଁ ତା'ପତ୍ନୀ ତା' ସହ ମୁହାଁମୁହିଁ ହୋଇଯାଏ । ବାପଠାରେ ଯୋଗ୍ୟତା ନଥିବ ତେବେଯାଇ ଏପରି ହୁଏ ନା ! ଏମାନେ ତ ବଡ଼ ମୁଶକିଲ୍‌ରେ ଯେମିତି-ସେମିତି ନିଜ ସଂସାର ବ୍ୟତୀତ କରୁଛନ୍ତି । କିନ୍ତୁ ପତ୍ନୀ କେବେ ପର୍ଯ୍ୟନ୍ତ ସମାଜର ଭୟରେ ଡରି ରହିବ ?

**ପ୍ରଶ୍ନକର୍ତ୍ତା :** କ'ଣ ସବୁବେଳେ ବାପର ହିଁ ଭୁଲ ଥାଏ ?

**ଦାଦାଶ୍ରୀ :** ବାପର ହିଁ ଭୁଲ ଥାଏ । ତା'କୁ ବାପ ହେବା ଆସିଲା ନାହିଁ, ସେଥିପାଇଁ ଏ ସବୁ ବିଗିଡ଼ି ଯାଇଛି । ଘରେ ଯଦି ବାପ ହେବାର ଥିବ, ତେବେ ତା' ସ୍ତ୍ରୀ ତା'ପାଖରୁ ବିଷୟର ଭିକ ମାଗେ, ଏପରି ଦୃଷ୍ଟି ହେବ ତେବେ ବାପ ହୋଇପାରିବ ।

**ପ୍ରଶ୍ନକର୍ତ୍ତା :** ଯଦି ବାପ ଘରେ ଜୋର ନ ରଖେ, ବାପପଣିଆ ନ ରଖେ ତଥାପି ତା'ର ଭୁଲ ?

**ଦାଦାଶ୍ରୀ :** ତେବେ ତ ସବୁ ଠିକ ହୋଇଯିବ ।

**ପ୍ରଶ୍ନକର୍ତ୍ତା :** ତଥାପି ପିଲାମାନେ ବାପର କଥା ମାନିବେ, ଏହାର କ'ଣ ଗ୍ୟାରେଣ୍ଟି ?

**ଦାଦାଶ୍ରୀ :** ଅଛି ନା ! ନିଜ 'କ୍ୟାରେକ୍ଟର' (ଚରିତ୍ର) ଠିକ, ତେବେ ସାରା ସଂସାର 'କ୍ୟାରେକ୍ଟର ବାଲା' (ଚରିତ୍ରବାନ) ଅଟେ ।

**ପ୍ରଶ୍ନକର୍ତ୍ତା :** ପିଲାମାନେ ନିମ୍ନକୋଟିର ବାହାରିଲେ, ତେବେ ସେଥିରେ ବାପ କ'ଣ କରିବ ?

**ଦାଦାଶ୍ରୀ :** ମୂଳ ଦୋଷ ବାପର ହିଁ ଥାଏ । ସେ କାହିଁକି ଭୋଗୁଅଛି ? ପ୍ରଥମରୁ ଆଚରଣ ବିଗାଡ଼ିଛନ୍ତି, ସେହି କାରଣରୁ ଏହି ଦଶା ହୋଇଛି ନା ? ମୁଁ ଏହା କହିବାକୁ ଚାହୁଁଛି ଯେ ଯାହାର କୌଣସି ଜନ୍ମରେ ନିଜ ଆଚରଣ ଉପରୁ କଣ୍ଟ୍ରୋଲ (ଅଙ୍କୁଶ) ନ ଉଠିଥିବ ତା'ସହ ଏପରି ହୁଏ ନାହିଁ । ପୂର୍ବକର୍ମ କିପରି ହେଲା ? ନିଜର ମୂଳ କଣ୍ଟ୍ରୋଲ ନାହିଁ, ସେଥିପାଇଁ ନା ? ଅର୍ଥାତ ମୁଁ କଣ୍ଟ୍ରୋଲରେ ମାନେ । କଣ୍ଟ୍ରୋଲ ମାନିବା ପାଇଁ ତୋତେ ତାହାର ସବୁ ନିୟମ ବୁଝିବା ଉଚିତ ।

ଏ ପିଲାମାନେ ନିଜର ଆଇନା ଅଟନ୍ତି । ନିଜ ପିଲାମାନଙ୍କ ଉପରୁ ଜଣା ପଡ଼େ ଯେ ନିଜର କେତେ ଭୁଲ ଅଛି !

ଯଦି ତୁମଠାରେ ଶୀଳ ନାମକ ଗୁଣ ଥିବ ତେବେ ବାଘ ମଧ୍ୟ ତୁମ ବଶରେ ରୁହେ ତେବେ ପିଲାଙ୍କର କି ଔକାତ ? ନିଜ ଶୀଳର ଠିକଣା ନାହିଁ, ସେହି କାରଣରୁ ଏ ସବୁ ଗଡ଼ବଡ଼ ହେଉଛି । ଶୀଳ ବୁଝିଗଲ ନା ?

**ପ୍ରଶ୍ନକର୍ତ୍ତା :** ଶୀଳ କାହାକୁ କହିବା ? ତାହା ବିଷୟରେ ଟିକେ ବିସ୍ତାରରେ, ସମସ୍ତେ ବୁଝିପାରିବେ, ଏପରି କୁହନ୍ତୁ ନା !

**ଦାଦାଶ୍ରୀ :** କିଞ୍ଚିତମାତ୍ର ଦୁଃଖ ଦେବାର ଭାବ ନଥାଏ । ନିଜ ଶତ୍ରୁକୁ ବି ତିଳେମାତ୍ର ଦୁଃଖ ପହଞ୍ଚାଇବାର ଭାବ ନଥାଏ । ତା' ପାଖରେ 'ସିନ୍ସିୟରିଟି'(ନିଷ୍ଠା) ଥାଏ, 'ମୋରାଲିଟୀ' (ନୈତିକତା) ଥାଏ, ସବୁ ଗୁଣ ସମ୍ମିଳିତ ହୋଇଥିବ । କିଞ୍ଚିତମାତ୍ର ହିସଂକ ଭାବ ନଥାଏ, ସେ 'ଶୀଳବାନ' କୁହାଯାଏ । ସେଠି ବାଘ ମଧ୍ୟ ଥଣ୍ଡା ହୋଇଯାଏ ।

**ପ୍ରଶ୍ନକର୍ତ୍ତା :** ଆଜିକାଲିର ମାତା-ପିତା ଏଭଳି ସବୁ ଆଣିବେ କେଉଁଠୁ ?

**ଦାଦାଶ୍ରୀ :** ତଥାପି ଆମକୁ ସେଥିରୁ ଅଳ୍ପ ବହୁତ, ପଚିଶ ପ୍ରତିଶତ ଦରକାର ନା ଦରକାର ନାହିଁ ? କିନ୍ତୁ ଆମେ କାଳ(ସମୟ) ଯୋଗୁଁ ଆଇସକ୍ରିମ ଖାଇ ଚାଲିଥିବା ଏପରି ମୌଜୀ ହୋଇଗଲେଣି ।

**ପ୍ରଶ୍ନକର୍ତ୍ତା :** ପିତାଙ୍କ ଚରିତ୍ର କିପରି ହେବା ଉଚିତ ?

**ଦାଦାଶ୍ରୀ :** ପିଲାମାନେ ପ୍ରତିଦିନ କହିବେ ଯେ 'ପାପା, ଆମକୁ ବାହାରେ ଭଲ ଲାଗୁନାହିଁ । ତୁମ ସହିତ ବହୁତ ଭଲ ଲାଗୁଛି ।' ଏଭଳି ଚରିତ୍ର ହେବା ଉଚିତ ।

**ପ୍ରଶ୍ନକର୍ତ୍ତା :** ଏହା ତ ଓଲଟା ହେଉଛି, ବାପ ଘରେ ଥିବ ତେବେ ପୁଅ ବାହାରକୁ ଯାଏ ଆଉ ବାପ ବାହାରକୁ ଯାଏ ତେବେ ପୁଅ ଘରେ ରୁହେ ।

**ଦାଦାଶ୍ରୀ :** ପୁଅକୁ ପାପାଙ୍କ ବିନା ଭଲ ନ ଲାଗେ ଏପରି ହେବା ଉଚିତ ।

**ପ୍ରଶ୍ନକର୍ତ୍ତା :** ତେବେ ଏପରି ହେବା ପାଇଁ ପାପାଙ୍କୁ କ'ଣ କରିବା ଉଚିତ ?

**ଦାଦାଶ୍ରୀ :** ଯେତେବେଳେ ମୋତେ ପିଲାମାନେ ଭେଟନ୍ତି ନା, ପିଲାମାନଙ୍କୁ ମୋ ବିନା ଭଲଲାଗେ ନାହିଁ । ବୁଢ଼ାମାନେ ଭେଟନ୍ତି, ତେବେ ବୁଢ଼ାମାନଙ୍କୁ ବି ମୋ ବିନା ଭଲ ଲାଗେ ନାହିଁ । ଯୁବଗୋଷ୍ଠୀ ଭେଟନ୍ତି ତେବେ ସେମାନଙ୍କୁ ମଧ୍ୟ ମୋ ବିନା ଭଲ ଲାଗେ ନାହିଁ ।

**ପ୍ରଶ୍ନକର୍ତ୍ତା :** ଆମକୁ ମଧ୍ୟ ଆପଣଙ୍କ ପରି ହେବାର ଅଛି ।

**ଦାଦାଶ୍ରୀ :** ହଁ, ଯଦି ତୁମେ ମୋ ପରି କରିବ ତେବେ ସେହିପରି ହୋଇଯିବ । ଯଦି ତୁମେ କୁହ, 'ପେପ୍ସୀ ଆଣ ।' ତେବେ ସେ କହିବେ, 'ନାହିଁ ।' 'ତେବେ କୌଣସି ଅସୁବିଧା ନାହିଁ, ପାଣି ନେଇ ଆସ ।' ଯେବେକି ଏମାନେ ତ କହିବେ, 'ପେପ୍ସୀ କାହିଁକି ଆଣିକି ରଖ୍ ନାହଁ ?' ଏହା ହେଲା ଗଡ଼ବଡ଼ ପୁଣି ଥରେ । ମୋତେ ତ ଦ୍ୱିପ୍ରହର ଭୋଜନର ସମୟ ହୋଇଥିବ ଏବଂ ଯଦି କହିବେ ଯେ 'ଆଜି ତ ରୋଷେଇ କରିନାହିଁ ।' ତେବେ ମୁଁ କହିବି ଯେ 'ଠିକ ଅଛି, ଆଣ ଟିକିଏ ପାଣି ପିଇ ଦେବା, ବାସ୍ ।' 'ତୁମେ କାହିଁକି ରୋଷେଇ କଲନାହିଁ?' କହିଲ ମାନେ ଫୌଜଦାର ହୋଇଗଲ । ସେଠାରେ ଫୌଜଦାରୀ କରିବାରେ ଲାଗନ୍ତି ।

## (୫) ବୁଝାଇଲେ ସୁଧୁରିବେ, ପିଲାମାନେ

ଏ କିଚ୍-କିଚ୍ କରିବା ଅପେକ୍ଷା ମୌନ ରହିବା ଭଲ, ନ କହିବା ଭଲ । ପିଲାମାନେ ସୁଧୁରିବା ଅପେକ୍ଷା ବିଗିଡ଼ି ଯାଆନ୍ତି, ଏଣୁ ଏକ ଅକ୍ଷର ବି କହିବ ନାହିଁ । ବିଗିଡ଼ି ଯାଆନ୍ତି, ତାହାର ଉତ୍ତରଦାୟିତ୍ୱ ଆମର ଅଟେ । ଏହା ବୁଝିବା ଭଳି କଥା ଅଟେ ନା ?

ତୁମେ କୁହ ଯେ ଏପରି କରନାହିଁ, ତେବେ ଓଲଟା ହିଁ କରେ । 'କରିବି, ଯାଅ ଯାହା କରିବା କଥା କର ।' ଓଲଟା ସେ ବେଶୀ ବିଗିଡ଼ି ଯାଏ । ପିଲାମାନେ ଆମ ଇଜ୍ଜତ ମାଟିରେ ମିଶେଇ ଦିଅନ୍ତି । ଏହି ଭାରତୀୟ ମାନଙ୍କୁ ଜୀବନ ଜିଇଁବା ମଧ୍ୟ ଆସିଲା ନାହିଁ ! ବାପ ହେବା ଆସିଲା ନାହିଁ ଆଉ ବାପ ହୋଇ ବସି ଯାଇଛନ୍ତି । ସେଥିପାଇଁ ଏମିତି ସେମିତି ମୋତେ ବୁଝାଇବାକୁ ପଡୁଛି, ପୁସ୍ତକ ପ୍ରକାଶିତ କରିବାକୁ ପଡୁଛି । ନହେଲେ ଯେଉଁମାନେ ଆମ ଜ୍ଞାନ ନେଇଛନ୍ତି, ସେମାନେ ତ ପିଲାମାନଙ୍କୁ ବହୁତ ଭଲ ଭାବେ ଗଢ଼ି ପାରିବେ । ତା'କୁ ବସେଇ, ମୁଣ୍ଡରେ ହାତ ବୁଲାଇ ପଚାର ଯେ, 'ପୁଅ, ଏହା ଭୁଲ ହେଲା, ତୋତେ ଏପରି ଲାଗୁନାହିଁ !'

ଏ ଇଣ୍ଡିୟନ ଫିଲୋସଫି (ତତ୍ତ୍ୱ ଦର୍ଶନ) କିପରି ହୋଇଥାଏ? ମାତା-ପିତାଙ୍କ ମଧ୍ୟରୁ ଜଣେ ଗାଳି କରେ ସେତେବେଳେ ଅନ୍ୟ ଜଣକ, ପିଲାର ରକ୍ଷଣ କରେ । ଏଥିପାଇଁ ସେ କିଛି ସୁଧୁରୁଥିବ, ତେବେ ସୁଧୁରିବା ତ ଏକ ପାର୍ଶ୍ୱରେ ରହିଲା, ଉପରୁ ପୁଅ ବୁଝେ ଯେ 'ମମ୍ମୀ ଭଲ ଏବଂ ପାପା ଖରାପ, ବଡ଼ ହୋଇଯିବି ସେତେବେଳେ ୟାଙ୍କୁ ମାରିବି ।'

ପିଲାମାନଙ୍କୁ ସୁଧାରିବାର ଅଛି ତେବେ ମୋ ଆଜ୍ଞାନୁସାରେ ଚାଲ । ପିଲାମାନେ ପଚାରିଲେ ହିଁ କହିବ ଏବଂ ସେମାନଙ୍କୁ ଏହା ମଧ୍ୟ କହିଦେବ ଯେ ମୋତେ ନ ପଚାରିବ ତେବେ ଭଲ । ପିଲାଙ୍କ ସମ୍ବନ୍ଧରେ ଓଲଟା ବିଚାର ଆସେ ତେବେ ତୁରନ୍ତ ତାହାର ପ୍ରତିକ୍ରମଣ କରିଦେବ ।

କାହାକୁ ସୁଧାରିବାର ଶକ୍ତି ଏହି କାଳରେ ଖତମ୍ ହୋଇଯାଇଛି । ଏଣୁ ସୁଧାରିବାର ଆଶା ଛାଡ଼ିଦିଅ । କାହିଁକିନା ମନ-ବଚନ-କାୟାର ଏକାତ୍ମବୃତ୍ତି ଥିବ, ତେବେଯାଇ ସାମ୍ନାବାଲା ସୁଧୁରିପାରେ । ମନରେ ଯେପରି ଥିବ, ସେହିପରି ବାଣୀରେ ବାହାରେ ଏବଂ ବ୍ୟବହାର ମଧ୍ୟ ସେହିପରି ହେବ, ତେବେଯାଇ ସାମ୍ନାବାଲା ସୁଧୁରିବ । ଏହି କାଳରେ ଏପରି ନାହିଁ । ଘରେ ପ୍ରତ୍ୟେକ ବ୍ୟକ୍ତିଙ୍କ ସହ କିପରି ବ୍ୟବହାର ରଖିବା, ତାହାର 'ନର୍ମାଲିଟୀ' (ସମାନତା) ଆଣିଦିଅ । ଆଚାର, ବିଚାର ଏବଂ ଉଚାରରେ ସିଧା ପରିବର୍ତ୍ତନ ହେବ ତେବେ ନିଜେ ପରମାତ୍ମା ହୋଇପାରେ ଏବଂ ଓଲଟା ପରିବର୍ତ୍ତନ ହେବ ତେବେ ରାକ୍ଷସ ବି ହୋଇପାରେ ।

ଲୋକେ ସାମ୍ନାବାଲାକୁ ସୁଧାରିବାକୁ ଯାଇ ସବୁ ଫ୍ରାକ୍‌ଚର କରିପକାନ୍ତି । ପ୍ରଥମେ ନିଜେ ସୁଧୁରିବ ତେବେଯାଇ ଅନ୍ୟମାନଙ୍କୁ ସୁଧାରି ପାରିବ । କିନ୍ତୁ ନିଜର ସୁଧାର ବିନା ସାମ୍ନାବାଲା କିପରି ସୁଧୁରିବ ?

ଆମକୁ ପିଲାମାନଙ୍କ ପାଇଁ ଭାବ କରିଚାଲିବାର ଅଛି ଯେ ପିଲାଙ୍କୁ ସଦ୍‌ବୁଦ୍ଧି ପ୍ରାପ୍ତ ହେଉ । ଏପରି କରୁ-କରୁ ଦିନେ ତାହାର ପ୍ରଭାବ ନ ପଡ଼ି ରୁହେ ନାହିଁ । ସେମାନେ ତ ଧୀରେ-ଧୀରେ ବୁଝିବେ, ତୁମେ ଭାବନା କରୁଥାଅ । ତାଙ୍କ ଉପରେ ଜବରଦସ୍ତି କରିବ ତେବେ ଓଲଟା ଚାଲିବେ । ତାତ୍ପର୍ଯ୍ୟ ଏହା ଯେ ସଂସାର ଯେମିତି-ସେମିତି ପୂରା କରିନେବା ଭଳି ଅଟେ ।

ପୁଅ ମଦ ପିଇ ଆସେ ଏବଂ ତୁମକୁ ଦୁଃଖ ଦିଏ, ସେତେବେଳେ ଯଦି ତୁମେ ମୋତେ କୁହ ଯେ ଏ ପୁଅ ମୋତେ ବହୁତ ଦୁଃଖ ଦେଉଛି ତେବେ ମୁଁ କହିବି ଯେ ଭୁଲ ତୁମର ଅଟେ, ଏଣୁ ବିନା ଭାବ ବିଗାଡ଼ି, ଚୁପଚାପ ଶାନ୍ତିରେ ଭୋଗିନିଅ । ଏହା

ଭଗବାନ ମହାବୀରଙ୍କ ନିୟମ ଅଟେ ଏବଂ ସଂସାରର ନିୟମ ଅଲଗା ଅଟେ । ସଂସାରର ଲୋକେ କହିବେ ଯେ 'ପୁଅର ଭୁଲ' । ଏମିତି କହିବାବାଲା ତୁମକୁ ମିଳିଯିବେ ଏବଂ ତୁମେ ମଧ୍ୟ ସ୍ୱୀକାରି ନେବ (ଦୃଢ଼ ଭାବରେ) ଯେ 'ପୁଅର ଭୁଲ', ମୁଁ ଠିକ ବୁଝିଛି ।' ବଡ଼ ଆସିଲା ବୁଝିବାବାଲା ! ଭଗବାନ କୁହନ୍ତି, 'ତୋର ଭୁଲ ।'

ତୁମେ ଫ୍ରେଣ୍ଡସିପ୍ (ମିତ୍ରତା) କରିବ ତେବେ ପିଲାମାନେ ସୁଧୁରିବେ । ତୁମର ଫ୍ରେଣ୍ଡସିପ୍ ହେବ ତେବେ ପିଲାମାନେ ସୁଧୁରିବେ । କିନ୍ତୁ ମାତା-ପିତାଙ୍କ ଭଳି ରହିବ, ମର୍ଯ୍ୟାଦା ରଖିବାକୁ ଯିବ, ତେବେ ଜୋଖିମ ଅଟେ । ଫ୍ରେଣ୍ଡ(ମିତ୍ର) ପରି ରହିବା ଉଚିତ । ସେମାନେ ବାହାରେ ଫ୍ରେଣ୍ଡ ଖୋଜିବା ପାଇଁ ନ ଯିବେ ସେହିପରି ରହିବା ଉଚିତ । ଯଦି ତୁମେ ଫ୍ରେଣ୍ଡ ଅଟ, ତେବେ ତା'ସହ ଖେଳିବା ଉଚିତ, ଫ୍ରେଣ୍ଡ ଭଳି ସବୁ କରିବା ଉଚିତ ! ତୁ ଆସିବା ପରେ ଆମେ ଚାହା ପିଇବା, ଏପରି କହିବା ଉଚିତ । ଆମେ ସବୁ ସାଥିରେ ମିଶି ଚାହା ପିଇବା । ଯେପରି ସେ ତୁମ ମିତ୍ର, ସେହିପରି ବ୍ୟବହାର କରିବା ଉଚିତ, ତେବେଯାଇ ପିଲାମାନେ ତୁମର ରହିବେ । ନହେଲେ ପିଲାମାନେ ତୁମର ହେବେ ନାହିଁ, ବାସ୍ତବରେ କେହି ପିଲା କାହାର ହୋଇ ହିଁ ନଥାଏ । କେହି ବ୍ୟକ୍ତି ମରିଯାଏ ତେବେ, ତା' ପଛରେ ତା' ପୁଅ ମରେ କେବେ ? ସମସ୍ତେ ଘରକୁ ଆସି ଖିଆ-ପିଆ କରନ୍ତି । ଏମାନେ ପୁଅ-ଝିଅ ନୁହନ୍ତି, ଏମାନେ ତ କେବଳ ପ୍ରକୃତିର ନିୟମାନୁସାରେ (ସମ୍ବନ୍ଧୀ ରୂପରେ) ଦେଖା ଦିଅନ୍ତି, କେବଳ ଏତିକି । 'ୟୋର ଫ୍ରେଣ୍ଡ'(ତୁମ ମିତ୍ର) ରୂପରେ ରହିବା ଉଚିତ । ତୁମେ ପ୍ରଥମେ ସ୍ଥିର କରିବ ତେବେ ଫ୍ରେଣ୍ଡ ରୂପରେ ରହିପାରିବ । ଯେମିତି ଫ୍ରେଣ୍ଡକୁ ଖରାପ ଲାଗିବା ପରି କୁହନ୍ତି ନାହିଁ, ସେ ଓଲଟା କରୁଥିବ ତେବେ ଆମେ ତା'କୁ କେଉଁ ପର୍ଯ୍ୟନ୍ତ ବୁଝାନ୍ତି ଯେ ସେ ମାନିଯାଏ ସେପର୍ଯ୍ୟନ୍ତ ଆଉ ନ ମାନେ ତେବେ ପୁଣି ତା'କୁ କୁହନ୍ତି ଯେ 'ଯେମିତି ତୋ ଇଚ୍ଛା' । ଫ୍ରେଣ୍ଡ ହେବା ପାଇଁ ମନରେ ପ୍ରଥମେ କ'ଣ ଭାବିବା ଉଚିତ ? ବାହ୍ୟ ବ୍ୟବହାରରେ 'ମୁଁ ତା'ର ପିତା ଅଟେ', କିନ୍ତୁ ଭିତରୁ ମନରେ ଏପରି ମାନିବା ଉଚିତ ଯେ ମୁଁ ତା'ର ପୁତ୍ର ଅଟେ । ତେବେଯାଇ ଫ୍ରେଣ୍ଡସିପ୍ ହୋଇପାରିବ, ନହେଲେ ହେବ ନାହିଁ । ପିତା ମିତ୍ର କିପରି ହେବ ? ତା' ଲେବଲ୍(ସ୍ତର) ଯାଏଁ ଆସିଲେ । ସେ ଲେବଲ୍ ଯାଏଁ ଆସିବା କିପରି ? ସେ ମନରେ ଏପରି ବୁଝୁ ଯେ 'ମୁଁ ତା'ର ପୁତ୍ର ଅଟେ ।' ଯଦି ଏପରି କହିବ ତେବେ କାମ ବାହାରି ଯିବ । କିଛି ଲୋକ କହୁଛନ୍ତି ଏବଂ କାମ ମଧ୍ୟ ହୋଇଯାଉଛି ।

**ପ୍ରଶ୍ନକର୍ତ୍ତା :** ଆପଣ କହିଲେ ଯେ ଷୋହଳ ବର୍ଷ ବୟସ ପରେ ଫ୍ରେଣ୍ଡ ପରି

ରହିବ, ତେବେ କ'ଣ ଷୋହଳ ବର୍ଷ ପୂର୍ବରୁ ମଧ୍ୟ ତା' ସହ ଫ୍ରେଣ୍ଡସିପ୍ ହିଁ ରଖିବା ଉଚିତ ?

**ଦାଦାଶ୍ରୀ :** ତେବେ ତ ବହୁତ ଭଲ । କିନ୍ତୁ ଦଶ-ଏଗାର ବର୍ଷ ବୟସ ପର୍ଯ୍ୟନ୍ତ ଆମେ ଫ୍ରେଣ୍ଡସିପ୍ ରଖିପାରିବା ନାହିଁ । ସେପର୍ଯ୍ୟନ୍ତ ତା'ଦ୍ୱାରା ଭୁଲ-ଚୁକ ହୋଇପାରେ । ଏଣୁ ତା'କୁ ବୁଝାଇବା ଉଚିତ । ଗୋଟେ ଅଧେ ଚଟକଣା ବି ଲଗାଇବାକୁ ପଡ଼େ, ଦଶ-ଏଗାର ବର୍ଷ ପର୍ଯ୍ୟନ୍ତ । ସେ ବାପର ନିଶ ଟାଣୁଥିବ ତେବେ ଚଟକଣା ବି ଲଗାଇବାକୁ ପଡ଼େ । ଯେଉଁମାନେ ବାପ ବନିବା ପାଇଁ ଗଲେ ନା, ସେମାନେ ତ ମାଡ଼ ଖାଇ ମରିଗଲେ ।

ପ୍ରତ୍ୟେକ ମଣିଷକୁ ନିଜ ପିଲାମାନଙ୍କୁ ସୁଧାରିବାର ସମସ୍ତ ପ୍ରୟାସ କରିବା ଉଚିତ । ମାତ୍ର ପ୍ରୟାସ ସଫଳ ହେବା ଉଚିତ । ବାପ ହେଲା, ଏବେ ପିଲାଙ୍କୁ ସୁଧାରିବା ପାଇଁ କ'ଣ ସେ ବାପପଣିଆ ଛାଡ଼ି ପାରେ ? 'ମୁଁ ପିତା ଅଟେ' କ'ଣ ଏହା ଛାଡ଼ି ଦିଏ ?

**ପ୍ରଶ୍ନକର୍ତ୍ତା :** ଯଦି ସେ ସୁଧୁରୁଥିବ ତେବେ ଅହଂ ଭାବ, ଦ୍ୱେଷ, ସବୁ ଛାଡ଼ି ତା'କୁ ସୁଧାରିବାର ପ୍ରୟାସ କରିବା ଉଚିତ ?

**ଦାଦାଶ୍ରୀ :** ତୁମକୁ ବାପ ହେବାର ଭାବ ଛାଡ଼ି ଦେବାକୁ ହେବ ।

**ପ୍ରଶ୍ନକର୍ତ୍ତା :** 'ଏ ମୋ ପୁତ୍ର' ଏପରି ମାନିବୁ ନାହିଁ ଏବଂ 'ମୁଁ ବାପ ଅଟେ' ଏପରି ମାନିବୁ ନାହିଁ ?

**ଦାଦାଶ୍ରୀ :** ତେବେ ତାହା ଭଳି ତ ଆଉ କିଛି ନାହିଁ ।

ମୋ ସ୍ୱଭାବ ପ୍ରେମଭରା ଏଣୁ ଦୁଇ-ଚାରି ଜଣ ଏପରି ଲୋକ ଥିଲେ, ସେମାନେ ମୋତେ ପ୍ରେମରେ 'ଦାଦା' କହୁଥିଲେ । ଏବଂ ଅନ୍ୟ ସବୁ ତ 'ଦାଦା କେବେ ଆସିଲେ ?' ଏମିତି ଉପରୁ ଉପରୁ ପଚାରୁ ଥିଲେ । ମୁଁ କୁହେ ଯେ 'ପଅର ଦିନ ଆସିଲି ।' ତା'ପରେ କିଛି ବି ନାହିଁ, ଦେଖାଣିଆ ନମସ୍କାର ! କିନ୍ତୁ ସେମାନେ ତ 'ରେଗ୍ୟୁଲର'(ନିୟମ ସହ) ନମସ୍କାର କରୁଥିଲେ । ମୁଁ ଖୋଜି ବାହାର କଲି ଯେ ସେମାନେ ମୋତେ 'ଦାଦା' କହିବେ, ତେବେ ମନରେ ମୁଁ ସେମାନଙ୍କୁ 'ଦାଦା' ମାନିବି । ସେମାନେ ମୋତେ ଯେତେବେଳେ 'ଦାଦା' କହିବେ ସେତେବେଳେ ମନରେ ମୁଁ ସେମାନଙ୍କୁ 'ଦାଦା' କହିବି ଅର୍ଥାତ୍ ପ୍ଲସ-ମାଇନସ କରି ଚାଲୁଥିଲି, ଭେଦ ପଡ଼ିବାକୁ ଦେଉନଥିଲି । ମୁଁ ସେମାନଙ୍କୁ ମନରେ ଦାଦା କହୁଥିଲି । ଯେମିତି-ଯେମିତି ମୋ ମନ

ବହୁତ ଭଲ ରହିବାକୁ ଲାଗିଲା, ହାଲୁକା ହେବାକୁ ଲାଗିଲା, ସେମିତି-ସେମିତି ସେମାନଙ୍କୁ ଆଟ୍ରାକ୍ସନ୍(ସ୍ନେହ) ବେଶୀ ହେବାକୁ ଲାଗିଲା ।

ମୁଁ ସେମାନଙ୍କୁ ମନରେ 'ଦାଦା' ମାନୁଥିଲି, ସେଥିପାଇଁ ମୋ କଥା ତାଙ୍କ ମନକୁ ପହଞ୍ଚୁ ଥିଲା ନା ! ତାଙ୍କୁ ଲାଗେ କି 'ଓହୋହୋ ! ତାଙ୍କୁ ମୋ ଉପରେ କେତେ ଭାବ ଅଛି !' ଏହା ଧ୍ୟାନପୂର୍ବକ ବୁଝିବା ଯୋଗ୍ୟ କଥା ଅଟେ । ଏପରି ସୂକ୍ଷ୍ମ କଥା କେବେ କେମିତି ପ୍ରକଟ ହୁଏ, ତ ତାହା ତୁମକୁ ବତାଇ ଦେଉଛି । ଯଦି ତୁମକୁ ଏପରି କରିବା ଆସିଯିବ ତେବେ କଲ୍ୟାଣ ହୋଇଯିବ ଏପରି ଅଟେ । ଏଣୁ ପୁଣି କ'ଣ କଲି ? ଏହିପରି ବ୍ୟବହାର ସବୁବେଳେ ଚାଲେ ସେଥିପାଇଁ ସେମାନଙ୍କ ମନରେ ଏମିତି ହିଁ ଲାଗେ ଯେ ଦାଦା ପରି ଆଉ କେହି ମିଳିବେ ନାହିଁ ।

**ପ୍ରଶ୍ନକର୍ତ୍ତା :** ବାପ ଏମିତି ଭାବେ ଯେ ପୁଅ ଏଡ୍‌ଜଷ୍ଟ (ଅନୁକୂଳ) କାହିଁକି ହେଉନାହିଁ ?

**ଦାଦାଶ୍ରୀ :** ଏହା ତ ତା'ର ବାପପଣିଆ ଅଛି, ସେଥିପାଇଁ । ଭାନ୍ (ହୋସ) ହିଁ ନାହିଁ । ବାପପଣିଆ ଅର୍ଥାତ୍ ବେଭାନ୍‌ପଣିଆ । ଯେଉଁଠି 'ପଣିଆ' ଶବ୍ଦ ଆସିଲା, ସେଠି ବେହୋସି ଅଛି ।

**ପ୍ରଶ୍ନକର୍ତ୍ତା :** ଏ ତ ବାପ ଓଲଟା କୁହେ ଯେ 'ମୁଁ ତୋ ବାପ, ତୁ ମୋ କଥା ମାନୁ ନାହୁଁ ? ମୋ ମାନ ରଖୁନାହୁଁ ?'

**ଦାଦାଶ୍ରୀ :** 'ତୋତେ ଜଣା ନାହିଁ, ଯେ ମୁଁ ତୋ ବାପ ହେବି ?' ଜଣେ ବ୍ୟକ୍ତିକୁ ତ ମୁଁ ଏଭଳି କହିବାର ଶୁଣିଥିଲି । ଏ ତ କି ପ୍ରକାର ଘନ୍‌ଚକ୍କର (ମୁର୍ଖ, ବୋକା) ଜନ୍ମ ହୋଇଛନ୍ତି ? ଏଭଳି ବି କହିବାକୁ ପଡୁଛି ? ଯେଉଁ କଥା ସାରା ସଂସାର ଜାଣିଛି, ସେହି କଥା ବି କହିବାକୁ ପଡୁଛି ?

**ପ୍ରଶ୍ନକର୍ତ୍ତା :** ଦାଦା, ତାହା ଆଗର ଡାଇଲଗ୍(ସମ୍ବାଦ) ବି ମୁଁ ଶୁଣିଛି ଯେ ତୁମକୁ କିଏ କହିଥିଲା ଯେ ଆମକୁ ଜନ୍ମ କର !

**ଦାଦାଶ୍ରୀ :** ଏପରି କହିବେ ତେବେ ଆମର ସମ୍ମାନ କ'ଣ ରହିଗଲା ପୁଣି ?

## (୬) ପ୍ରେମରେ ସୁଧାର କୋମଳମତିଙ୍କୁ

**ପ୍ରଶ୍ନକର୍ତ୍ତା :** ତାଙ୍କର ଭୁଲ ହେଉଥିବ ତେବେ ଗାଳି କରିବାକୁ ତ ପଡ଼ିବ ନା ?

**ଦାଦାଶ୍ରୀ :** ସେତେବେଳେ ତୁମେ ସେମାନଙ୍କୁ ଏପରି ପଚାରିବା ଉଚିତ

ଯେ ଏସବୁ ତୁମେ ଯେଉଁ କରୁଛ, ତାହା ତୁମକୁ ଠିକ ଲାଗୁଛି ? ତୁମେ ଏ ସବୁ ବୁଝି ସୁଝି କରିଛ ? ସେତେବେଳେ ଯଦି ସେ କୁହେ ଯେ ମୋତେ ଠିକ୍ ଲାଗୁନାହିଁ । ତେବେ ତୁମେ କୁହ ଯେ ଭାଇ, ତେବେ ପୁଣି କ'ଣ ପାଇଁ ଆମେ ଅଯଥାରେ ଏପରି କରିବା ? ଏମିତି ନିଜେ ଟିକିଏ ବିଚାର କରି ଯଦି କହିବ ନା ! ସମସ୍ତେ ବୁଝନ୍ତି । ସମସ୍ତେ ନିଜେ ହିଁ ନ୍ୟାୟ କରନ୍ତି, ଯଦି ଭୁଲ ହେଉଥିବ ତେବେ ନିଜେ ବୁଝି ତ ପାରେ ! 'ତୁ ଏମିତି କାହିଁକି କଲୁ ?' ଏପରି କହିବା ତେବେ ଓଲଟା ଧରେ । 'ମୁଁ ଯାହା କରୁଛି ତାହା ଠିକ୍ ।' ଏମିତି କୁହେ ଏବଂ ପୁଣି ଓଲଟା କରେ । ଘର କିପରି ଚଳାଇବା ତାହା ଆସୁନାହିଁ । ଜୀବନ କିପରି ଜୀଇଁବା ତାହା ଆସୁନାହିଁ । ଏଣୁ ଜୀବନ ଜୀଇଁବାର ସବୁ ଚାବି ବତାଇଛି ଯେ କିପରି ଜୀବନ ଜୀଇଁବା ଉଚିତ !

ସାମ୍ନାବାଲାର ଅହଂକାର ଉଭା ହିଁ ନ ହେଉ । ଆମର ସତ୍ତାପୂର୍ଣ୍ଣ ଟୋନ୍ ନ ହେଉ । ଅର୍ଥାତ ସତ୍ତା ନ ରହିବା ଉଚିତ । ପିଲାମାନଙ୍କୁ ତୁମେ କିଛି କୁହ ତେବେ ଟୋନ୍ ସତ୍ତାପୂର୍ଣ୍ଣ ନ ହେବା ଉଚିତ ।

**ପ୍ରଶ୍ନକର୍ତ୍ତା :** ସଂସାରରେ ରହିବା ସହିତ ଅନେକ କର୍ତ୍ତବ୍ୟ ପାଳନ କରିବାକୁ ପଡ଼େ ଏବଂ କର୍ତ୍ତବ୍ୟ ପାଳନ କରିବା ଏକ ଧର୍ମ । ଏହି ଧର୍ମ ପାଳନ କରୁ କରୁ କାରଣେ-ଅକାରଣେ କଟୁବଚନ କହିବାକୁ ପଡ଼େ ତେବେ କ'ଣ ଏହା ପାପ ଅବା ଦୋଷ ଅଟେ ?

**ଦାଦାଶ୍ରୀ :** ଏପରି ଅଟେ ଯେ, କଟୁବଚନ କହିବା ସମୟରେ ଆମ ମୁହଁ କିପରି ହୋଇଯାଏ ? ଗୋଲାପ ଫୁଲ ପରି ? ଆମ ମୁହଁ ଯଦି ବିଗିଡ଼େ ତେବେ ବୁଝିବ ଯେ ପାପ ଲାଗିଲା । ନିଜ ଚେହେରା ବିଗିଡ଼େ ଏପରି ବାଣୀ ବାହାରେ, ତେବେ ବୁଝିବ ଯେ ପାପ ହେଲା । କଟୁବଚନ କହିବ ନାହିଁ । ଅଳ୍ପ ଶବ୍ଦ କୁହ କିନ୍ତୁ ଧୀରେ ଧୀରେ ବୁଝିକରି କୁହ । ପ୍ରେମ ରଖିବ ତେବେ ଦିନେ ଜିତି ପାରିବ । କଠୋରତା ଦ୍ୱାରା ଜିତି ପାରିବ ନାହିଁ । ଓଲଟା ସେ ବିରୋଧରେ ଯିବ ଏବଂ ପରିଣାମ ବୀପରିତ ହେବ । ସେ ପୁଅ ଓଲଟା ପରିଣାମର ବୀଜ ବୁଣେ । 'ଏବେ ତ ମୁଁ ଛୋଟ ହୋଇଛି, ସେଥିପାଇଁ ଗାଳି କରୁଛ କିନ୍ତୁ ବଡ଼ ହୋଇ ଦେଖିନେବି ।' ଭିତରେ ଏଭଳି ଅଭିପ୍ରାୟ କରିନେବ । ଏଣୁ ଏପରି କରନାହିଁ, ତା'କୁ ବୁଝାଅ । ଦିନେ ପ୍ରେମର ଜୟ ହେବ । ଦୁଇ ଦିନ ଭିତରେ ତାହାର ପରିଣାମ ଆସିବ ନାହିଁ । ଦଶ ଦିନ, ପନ୍ଦର ଦିନ, ମାସ ସାରା ତା'ସହ ପ୍ରେମ ରଖ । ଦେଖ, ଏହି ପ୍ରେମର କ'ଣ ପରିଣାମ ଆସୁଛି, ଦେଖ ତ ପ୍ରଥମେ !

**ପ୍ରଶ୍ନକର୍ତ୍ତା :** ଆମେ ଅନେକ ଥର ବୁଝାଉ କିନ୍ତୁ ସେ ନ ବୁଝନ୍ତି ତେବେ କ'ଣ କରିବୁ ?

**ଦାଦାଶ୍ରୀ :** ବୁଝାଇବାର ଆବଶ୍ୟକତା ହିଁ ନାହିଁ । ପ୍ରେମ ରଖ, ତଥାପି ଧୈର୍ଯ୍ୟ ସହ ତୁମେ ତା'କୁ ବୁଝାଅ । ନିଜ ପଡ଼ୋଶୀଙ୍କୁ ବି କ'ଣ ଏପରି କଟୁବଚନ କେବେ କହୁଛ ?

ଯେମିତି ଅଙ୍ଗାର (ନିଆଁ) ପାଇଁ ଆମେ କ'ଣ କରୁଛେ ? ଚିମୁଟାରେ ଧରୁଛେ ନା ? ଚିମୁଟା ରଖୁଛ ନା ? ଏବେ ଏମିତି ହିଁ ଖାଲି ହାତରେ ଅଙ୍ଗାରକୁ ଧରିବାକୁ ଯିବା ତେବେ କ'ଣ ହେବ ?

**ପ୍ରଶ୍ନକର୍ତ୍ତା :** ଜଳି ଯିବୁ ।

**ଦାଦାଶ୍ରୀ :** ସେଥିପାଇଁ ଚିମୁଟା ରଖିବାକୁ ପଡ଼େ ।

**ପ୍ରଶ୍ନକର୍ତ୍ତା :** ସେତେବେଳେ କି ପ୍ରକାର ଚିମୁଟା ରଖିବା ଉଚିତ ?

**ଦାଦାଶ୍ରୀ :** ଆମ ଘରର ଜଣେ ବ୍ୟକ୍ତି ଚିମୁଟା ପରି ଅଟେ, ସେ ନିଜେ ଜଳେ ନାହିଁ ଏବଂ ସାମ୍ନାବାଲାକୁ, ଜଳୁଥିବାବାଲାକୁ ଧରେ, ତେବେ ଆମେ ତା'କୁ ଡାକି କହିବା ଉଚିତ ଯେ 'ଭାଇ, ମୁଁ ଯେତେବେଳେ ଏହି ବ୍ୟକ୍ତି ସହ କଥା ହେବି ସେତେବେଳେ ତୁ ସାଙ୍ଗ ଦେବୁ ।' ଏହା ପରେ ସେ ସବୁ ଠିକ୍ କରିଦେବ । କିଛି ରାସ୍ତା ବାହାର କରିବା ଉଚିତ । ଖାଲି ହାତରେ ଅଙ୍ଗାର ଧରିବାକୁ ଯିବା ତେବେ କି ଅବସ୍ଥା ହେବ ?

ନିଜ କହିବାର ପରିଣାମ ନ ଆସୁଥିବ ତେବେ ଚୁପ ହୋଇଯିବା ଉଚିତ । ଆମେ ମୁର୍ଖ, ଆମକୁ କହିବା ଆସେ ନାହିଁ । ଏଥିପାଇଁ ଚୁପ ହୋଇଯିବା ଉଚିତ । ନିଜ କହିବାର ପରିଣାମ ଆସେ ନାହିଁ ଏବଂ ଓଲଟା ନିଜ ମନ ବିଗିଡ଼େ, ଆତ୍ମା ବିଗିଡ଼େ, ଏମିତି କିଏ କରିବ ?

**ପ୍ରଶ୍ନକର୍ତ୍ତା :** ମାତା-ପିତା ନିଜ ପିଲାଙ୍କ ପ୍ରତି ଯେଉଁ ସ୍ନେହ ଦେଖାନ୍ତି, ସେଥିରେ ଅନେକ ସମୟରେ ଏପରି ଲାଗେ ଯେ କିଛି ବେଶୀ ହୋଇଯାଉଛି ।

**ଦାଦାଶ୍ରୀ :** ସେ ସବୁ ଇମୋଶନାଲ୍(ଭାବୁକ) ଅଟନ୍ତି । କମ ଦେଖାଇବା ବାଲା ମଧ୍ୟ ଇମୋଶନାଲ୍ ଅଟନ୍ତି । ନର୍ମାଲ(ସାଧାରଣ) ହେବା ଉଚିତ । ନର୍ମାଲ ଅର୍ଥାତ କେବଳ ଦେଖାଣିଆ, 'ଡ୍ରାମାଟିକ'(ନାଟକୀୟ) । 'ଡ୍ରାମା'ରେ କେଉଁ ମହିଳା ସହ ଡ୍ରାମା କରିବାକୁ ପଡ଼େ, ତେବେ ତାହା ବାସ୍ତବିକ, ଏକ୍‌ଜାକ୍ଟ ଅଟେ, ଏପରି

ଲୋକଙ୍କୁ ଲାଗେ, ଯେ 'ରିୟଲ'(ସତ୍ୟ) ଅଟେ । କିନ୍ତୁ କଳାକାର ବାହାରକୁ ବାହାରି ଯଦି କୁହେ ଯେ 'ଚାଲ ମୋ ସହ, ତେବେ ?' ସେ ସାଥିରେ ଯାଏ ନାହିଁ, କହିବ ଯେ 'ଏହା ତ ଡ୍ରାମା ପର୍ଯ୍ୟନ୍ତ ଥିଲା ।' ବୁଝାପଡ଼ିଲା ନା ?

ଏହି ସଂସାରକୁ ସୁଧାରିବାର ରାସ୍ତା ପ୍ରେମ ହିଁ ଅଟେ । ସଂସାର ଯାହାକୁ ପ୍ରେମ କହେ ତାହା ପ୍ରେମ ନୁହେଁ, ତାହା ତ ଆସକ୍ତି ଅଟେ । ଏହି ଝିଅକୁ ପ୍ରେମ କରୁଛୁ, କିନ୍ତୁ ସେ ଗ୍ଲାସ ଭାଙ୍ଗେ ସେତେବେଳେ ପ୍ରେମ ରହେ ? ସେତେବେଳେ ତ ତୁ ଚିଡୁଛୁ । ମାନେ ତାହା ଆସକ୍ତି ଅଟେ । ପିଲାମାନେ ପ୍ରେମ ଖୋଜନ୍ତି, କିନ୍ତୁ ପ୍ରେମ ମିଳେ ନାହିଁ । ଏଣୁ ପୁଣି ତାଙ୍କ ଅସୁବିଧା ସେମାନେ ହିଁ ଜାଣନ୍ତି, ନା କହିପାରନ୍ତି, ନା ସହିପାରନ୍ତି । ଆଜିର ଯୁବପିଢ଼ି ପାଇଁ ମୋ ପାଖରେ ରାସ୍ତା ଅଛି । ଏହି ଜାହାଜର ମଙ୍ଗ କିଭଳି ସମ୍ଭାଳିବାକୁ ହେବ, ଏହାର ମାର୍ଗଦର୍ଶନ ମୋତେ ଭିତରୁ ମିଳେ । ମୋ ପାଖରେ ଏଭଳି ପ୍ରେମ ଉତ୍ପନ୍ନ ହୋଇଛି ଯେ ଯାହା ବଢ଼େ ନାହିଁ ଏବଂ କମେ ମଧ୍ୟ ନାହିଁ । ବଢ଼େ-କମେ ତାହା ଆସକ୍ତି କୁହାଯାଏ । ଯାହା ବଢ଼େ ନାହିଁ-କମେ ନାହିଁ ତାହା ପରମାତ୍ମ ପ୍ରେମ କୁହାଯାଏ । ସମସ୍ତେ ପ୍ରେମର ବଶରେ ରହନ୍ତି । ଯାହାକୁ ପ୍ରକୃତ ପ୍ରେମ କୁହନ୍ତି ନା, ତାହା ତ ଦେଖିବାକୁ ମଧ୍ୟ ମିଳେ ନାହିଁ । ପ୍ରେମ, ଜଗତ ଦେଖି ହିଁ ନାହିଁ । କେଉଁ ସମୟରେ ଜ୍ଞାନୀପୁରୁଷ ଅଥବା ଭଗବାନ ଥିବେ, ସେତେବେଳେ ପ୍ରେମ ଦେଖେ । ପ୍ରେମରେ କମା-ବଢ଼ା ନଥାଏ, ଅନାଶକ୍ତି ଥାଏ । ତାହା ହିଁ ପ୍ରେମ । ଜ୍ଞାନୀଙ୍କ ପ୍ରେମ, ତାହା ହିଁ ପରମାତ୍ମା ଅଟେ ।

ଛୋଟ ପିଲାଙ୍କ ସହିତ ମୋର ଖୁବ ଜମେ । ମୋ ସହ ଫ୍ରେଣ୍ଡସିପ୍(ମିତ୍ରତା) କରନ୍ତି । ଏବେ ଯେତେବେଳେ ଏଠି ଭିତରକୁ ଆସୁଥିଲି ନା, ସେତେବେଳେ ଏକ ଏଡ଼ିକି ବକଟେ ପିଲା ଥିଲା, ସେ ନେବାକୁ ଆସିଲା ଏବଂ କହିଲା 'ଚାଲନ୍ତୁ' । ଏଠିକୁ ଆସୁ ଆସୁ ନେବାକୁ ଆସିଲା । ମୋ ସହିତ ଫ୍ରେଣ୍ଡସିପ କଲା । ତୁମେ ତ ଗେଲ କରୁଛ । ମୁଁ ଗେଲ କରେ ନାହିଁ, ପ୍ରେମ କରେ ।

**ପ୍ରଶ୍ନକର୍ତ୍ତା :** ଏହା ଟିକିଏ ବୁଝାନ୍ତୁ ନା ଦାଦାଜୀ, ଗେଲ କରିବା ଏବଂ ପ୍ରେମ କରିବା । କିଛି ଉଦାହରଣ ଦେଇ ବୁଝାନ୍ତୁ ।

**ଦାଦାଶ୍ରୀ :** ଆରେ, ଜଣେ ବ୍ୟକ୍ତି ତ ନିଜ ପୁଅକୁ ଛାତିରେ ଏମିତି ଜାବୁଡ଼ି ଧରିଲା ! ଦୁଇବର୍ଷ ହେଲା ତା'କୁ ଭେଟି ନଥିଲା ଏବଂ ଉଠାଇ ନେଇ ଏମିତି ଜାବୁଡ଼ି ଧରିଲା(କୁଣ୍ଢେଇବା) ! ସେତେବେଳେ ପୁଅ ବହୁତ ଚିପି ହୋଇଗଲା ତେବେ ତା' ପାଖରେ କିଛି ବାଟ ରହିଲା ନାହିଁ । ସେଥିପାଇଁ ସେ କାମୁଡ଼ି ଦେଲା । ଏହା ତ କେଉଁ

ଶୈଳୀ ଅଟେ ? ଏ ଲୋକଙ୍କୁ ତ ବାପ ହେବା ବି ଆସେ ନାହିଁ !

**ପ୍ରଶ୍ନକର୍ତ୍ତା :** ଆଉ ଯିଏ ପ୍ରେମବାଲା ହୋଇଥିବ, ସେ କ'ଣ କରେ ?

**ଦାଦାଶ୍ରୀ :** ହଁ, ସେ ଏମିତି ଗାଲରେ ହାତ ବୁଲାଏ, ଏମିତି କାନ୍ଧ ଥାପୁଡ଼ାଏ । ଏହିପରି ଖୁସି କରେ । କିନ୍ତୁ କ'ଣ ତାକୁ ଏମିତି ଜାବୁଡ଼ି ଦେବା ଉଚିତ ଯେ ସେ ବିଚରା ପୁଣି ନିଃଶ୍ୱାସ ନ ନେଇ ପାରିବ ? ସେତେବେଳେ କାମୁଡ଼ି ହିଁ ଦେବ ନା ! କାମୁଡ଼ିବ ନାହିଁ, ନିଃଶ୍ୱାସ ବନ୍ଦ କରିଦେଲେ ?

ଆଉ ପିଲାଙ୍କୁ କେବେ ମାରିବ ନାହିଁ । କିଛି ଭୁଲଚୁକ ହେବ ତେବେ ବୁଝାଇବ ନିଶ୍ଚୟ, ଆରାମରେ ମୁଣ୍ଡରେ ହାତ ବୁଲାଇ ବୁଝାଇବ ନିଶ୍ଚୟ । ପ୍ରେମ ଦେବ ତେବେ ପିଲା ସମଝ୍‌ଦାର ହୁଏ ।

## (୭) 'ବିପରୀତତା' ଏହିପରି ଚାଲିଯାଏ

କ'ଣ କେବେ ଡ୍ରିଙ୍କ୍ସ(ମଦ) ଇତ୍ୟାଦି ନେଉଛ ?

**ପ୍ରଶ୍ନକର୍ତ୍ତା :** କେବେ-କେବେ । ଯେବେ ଘରେ ଝଗଡ଼ା ହୁଏ ତେବେ । ଏହା ମୁଁ ସତ କହୁଛି ।

**ଦାଦାଶ୍ରୀ :** ବନ୍ଦ କରିଦେବ । ତାହାଦ୍ୱାରା ପରବଶ ହୋଇଗଲ ! ଆମର ଚାଲେ ନାହିଁ ଏସବୁ, ଆମକୁ ଦରକାର ନାହିଁ । ନେବ ହିଁ ନାହିଁ, ଛୁଇଁବ ହିଁ ନାହିଁ ତୁମେ । ଦାଦାଙ୍କ ଆଜ୍ଞା ଅଟେ, ଏଣୁ ଛୁଇଁବାର ନାହିଁ । ତେବେଯାଇ ତୁମ ଜୀବନ ଭଲ ବ୍ୟତୀତ ହେବ । କାହିଁକିନା ଏବେ ତୁମକୁ ତାହାର ଆବଶ୍ୟକତା ରହିବ ନାହିଁ । ଏ ଚରଣବିଧି ଆଦି ସବୁ ପଢ଼ିବ ତେବେ ତୁମକୁ ତାହାର ଆବଶ୍ୟକତା ରହିବ ନାହିଁ ଏବଂ ଭରପୁର ଆନନ୍ଦ ରହିବ, ବହୁତ ଆନନ୍ଦ ରହିବ । ବୁଝାପଡ଼ିଲା ନା ନାହିଁ ?

**ପ୍ରଶ୍ନକର୍ତ୍ତା :** ବ୍ୟସନରୁ ମୁକ୍ତ କିପରି ରହିବୁ ?

**ଦାଦାଶ୍ରୀ :** ବ୍ୟସନରୁ ମୁକ୍ତ ହେବାପାଇଁ 'ବ୍ୟସନ ଖରାପ ଜିନିଷ ଅଟେ' ଏପରି ଆମକୁ ପ୍ରତୀତି ହେବା ଦରକାର । ଏହି ପ୍ରତୀତି ଢିଲା ନହେବା ଉଚିତ । ନିଜର *ନିଶ୍ଚୟ* (ସଂକଳ୍ପ)ନ ହଲିବା ଉଚିତ । ପରେ ମଣିଷ ବ୍ୟସନରୁ ଦୂରେଇ ରୁହେ । 'ଏଥିରେ କୌଣସି ଅସୁବିଧା ନାହିଁ' ଏପରି କହିଲା ତେବେ ବ୍ୟସନ ଆହୁରି ଅଧିକ ମଜଭୁତ୍ ହୋଇଯାଏ ।

**ପ୍ରଶ୍ନକର୍ତ୍ତା :** ଅନେକ ସମୟ ଧରି କେହି ମଦ ପିଇଥିବ ଅଥବା 'ଡ୍ରଗ୍ସ'(ନିଶାଦ୍ରବ୍ୟ) ନେଇଥିବ, ତେବେ କୁହନ୍ତି ତାହାର ପ୍ରଭାବ ତା' ମସ୍ତିଷ୍କ ଉପରେ

ପଡ଼େ । ପରେ ବନ୍ଦ କରିଦେବ ତଥାପି ତାହାର ପ୍ରଭାବ ତ ରୁହେ । ତେବେ ସେହି ପ୍ରଭାବରୁ ମୁକ୍ତ ହେବା ପାଇଁ ଆପଣ କ'ଣ କୁହନ୍ତି ? କିପରି ବାହାରକୁ ବାହାରିବୁ, ତା'ପାଇଁ କିଛି ରାସ୍ତା ଅଛି ?

**ଦାଦାଶ୍ରୀ :** ପରେ ତାହାର ରିଏକ୍ସନ ଆସେ । ଯେଉଁସବୁ ପରମାଣୁ ଅଛି, ସେସବୁ ଶୁଦ୍ଧ ହେବା ଦରକାର ନା ! ପିଇବା ବନ୍ଦ କରି ଦେଇଛି ନା ? ଏବେ ତା'କୁ କ'ଣ କରିବାର ଅଛି ? 'ମଦ ପିଇବା ଖରାପ ଅଟେ' ଏପରି ସବୁବେଳେ କହିବାର ଅଛି ।

ହଁ, ଛାଡ଼ିବା ପରେ ମଧ୍ୟ ଏପରି କହି ଚାଲିବ । କିନ୍ତୁ 'ଭଲ ଅଟେ' ଏପରି କେବେ କହିବ ନାହିଁ । ନହେଲେ ପୁଣିଥରେ ପ୍ରଭାବ ପଡ଼ିଯିବ ।

**ପ୍ରଶ୍ନକର୍ତ୍ତା :** ମଦ ପିଇବା ଦ୍ୱାରା ମସ୍ତିଷ୍କକୁ କେଉଁ ପ୍ରକାର କ୍ଷତି ହୁଏ ?

**ଦାଦାଶ୍ରୀ :** ଏକ ତ ଶୁଦ୍ଧ ଭୁଲେଇ ଦିଏ । ସେହି ସମୟରେ ଭିତରର ଜାଗୃତି ଉପରେ ଆବରଣ ଆସିଯାଏ । ପୁଣି କେବେ ବି ସେ ଆବରଣ ହଟେ ନାହିଁ । ଆମକୁ ମନରେ ଏପରି ଲାଗେ ଯେ ହଟିଗଲା, କିନ୍ତୁ ହଟେ ନାହିଁ । ଏପରି ହୋଇ-ହୋଇ ଆବରଣ ଆସି ଆସି ପୁଣି... ମଣିଷ ପୁରା ଜଡ଼ ପରି ହୋଇଯାଏ । ପରେ ତା'କୁ ଭଲ ବିଚାର ମଧ୍ୟ ଆସେ ନାହିଁ । ଯେଉଁମାନେ ଡେଭଲପ୍(ବିକାଶଶୀଳ) ହୋଇଛନ୍ତି, ସେମାନଙ୍କର ଏଥିରୁ ବାହାରକୁ ବାହାରିବା ପରେ ବ୍ରେନ୍(ମସ୍ତିଷ୍କ) ବହୁତ ଭଲ ଡେଭଲପ୍ ହୁଏ । ତାହାକୁ ପରେ ପୁଣି ବିଗାଡ଼ିବା ଉଚିତ ନୁହେଁ ।

**ପ୍ରଶ୍ନକର୍ତ୍ତା :** ମଦ ପିଇବା ଦ୍ୱାରା ମସ୍ତିଷ୍କ ଯେଉଁ ଡ୍ୟାମେଜ(କ୍ଷତି) ହୋଇଥିବ, ମସ୍ତିଷ୍କର ପରମାଣୁ ଯେଉଁ ଡ୍ୟାମେଜ ହୋଇଥିବ, ସେ ଡ୍ୟାମେଜ ଭାଗ ପୁଣିଥିରେ ରିପେୟର କିପରି ହୋଇପାରିବ ?

**ଦାଦାଶ୍ରୀ :** ତାହାର କୌଣସି ରାସ୍ତା ହିଁ ନାହିଁ । ତାହା ତ ସମୟ ସହିତ ଧୀରେ ଧୀରେ ଚାଲିଯିବ । ପିଇବା ବିନା ଯେଉଁ ଟାଇମ ବ୍ୟତୀତ ହେବ, ସେମିତି-ସେମିତି ସବୁ ନିରାବରଣ ହୋଇଚାଲିବ । ଏକାଥରେ ହେବ ନାହିଁ । ମଦ ଏବଂ ମାଂସାହାର ଦ୍ୱାରା ଯେଉଁ କ୍ଷତି ହୁଏ, ମଦ ଏବଂ ମାଂସାହାରରୁ ଯେଉଁ ସୁଖ ଭୋଗେ, ସେ ସୁଖ 'ରି ପେ'(ପରିଶୋଧ) କରିବା ସମୟରେ ପଶୁଯୋନିରେ ଯିବାକୁ ପଡ଼େ । ଏ ଯେତେ ବି ସୁଖ ତୁମେ ନେଉଛ, ସେସବୁ 'ରି ପେ' କରିବାକୁ ପଡ଼ିବ । ଏପରି ଦାୟିତ୍ୱଭାର ତୁମକୁ ବୁଝିବା ଉଚିତ । 'ଏହି ଜଗତ ଗପ୍ପ ନୁହେଁ' । ସୁଝିବାକୁ ପଡ଼େ

ଏପରି ଅଟେ ଏହି ଜଗତ ! କେବଳ ଏହି ଆନ୍ତରିକ ସୁଖ ହିଁ 'ରି ପେ' କରିବାକୁ ପଡ଼େ ନାହିଁ । ଅନ୍ୟ ସବୁ ବାହାରର ସୁଖ 'ରି ପେ' କରିବାର ଅଛି । ଯେତିକି ଆମକୁ ଜମା କରିବାକୁ ଥିବ ସେତିକି କରିବା ଏବଂ ପରେ ପୁଣି ଫେରାଇବାକୁ ପଡ଼ିବ !!

**ପ୍ରଶ୍ନକର୍ତ୍ତା :** ଆସନ୍ତା ଜନ୍ମରେ ପଶୁ ହୋଇ 'ରି ପେ' କରିବାକୁ ପଡ଼ିବ ତାହା ତ ଠିକ୍, କିନ୍ତୁ ଏହି ଜନ୍ମରେ କ'ଣ ହେବ ? ଏହି ଜନ୍ମର ପରିଣାମ କ'ଣ ?

**ଦାଦାଶ୍ରୀ :** ଏହି ଜନ୍ମରେ ତା'କୁ ନିଜକୁ ଆବରଣ ଆସିଯାଏ, ସେଥିପାଇଁ ଜଡ଼ ପରି, ପଶୁ ପରି ହୋଇଯାଏ । ଲୋକଙ୍କ ପାଖରେ 'ପ୍ରେସ୍ଟିଜ୍' ରହେ ନାହିଁ, ଲୋକଙ୍କ ପାଖରେ ସମ୍ମାନ ରହେ ନାହିଁ, କିଛି ବି ରହେ ନାହିଁ ।

ଅଣ୍ଡା ହେଉ ଅବା ପିଲା ହେଉ, ଉଭୟ ସମାନ ହିଁ ଅଟନ୍ତି । କାହାର ଅଣ୍ଡା ଖାଇବା ଏବଂ କାହାର ପିଲା ଖାଇବା ସେଥିରେ ଫରକ ନାହିଁ । ତୋତେ ପିଲା ଖାଇବା ପସନ୍ଦ କି ? ତୋତେ କାହାର ପିଲା ଖାଇଯିବା ପସନ୍ଦ ?

**ପ୍ରଶ୍ନକର୍ତ୍ତା :** ଅଣ୍ଡାରେ ବି ଶାକାହାରୀ ଅଣ୍ଡା ଥାଏ ଏପରି ଲୋକଙ୍କ ମାନ୍ୟତା ଅଛି ।

**ଦାଦାଶ୍ରୀ :** ନା, ତାହା ତ ଭ୍ରାନ୍ତ ମାନ୍ୟତା ଅଟେ । ଯେଉଁ ଅଣ୍ଡାକୁ ନିର୍ଜୀବ ଅଣ୍ଡା କହୁଛନ୍ତି ସେମାନେ କ'ଣ ବିନା ଜୀବ(ପ୍ରାଣ)ର ଜିନିଷ ? ଯେଉଁଥିରେ ଜୀବ ନଥାଏ, ସେ ଜିନିଷ ଖାଇପାରିବା ନାହିଁ ।

**ପ୍ରଶ୍ନକର୍ତ୍ତା :** ଏହି କଥା କିଛି ଅଲଗା ଲାଗୁଛି । କୃପାକରି ବିସ୍ତାରରେ ବୁଝାନ୍ତୁ ।

**ଦାଦାଶ୍ରୀ :** ଅଲଗା ଅଟେ କିନ୍ତୁ କଥା 'ଏକ୍‌ଜାକ୍ଟ' ଅଟେ । ଏହା ତ 'ସାଇଣ୍ଟିଷ୍ଟ'ମାନେ ମଧ୍ୟ କହିଥିଲେ ଯେ ନିର୍ଜୀବ ଖିଆଯାଇ ପାରିବ ନାହିଁ ଏବଂ ସର୍ବଦା ଜୀବନ୍ତ ହିଁ ଖିଆଯାଏ । ସେଥିରେ ଜୀବ ତ ଅଛି, କିନ୍ତୁ ଭିନ୍ନ ପ୍ରକାରର ଜୀବ । ଏହା ତ ଲୋକମାନେ ଭୁଲ ଫାଇଦା ଉଠାଇଛନ୍ତି । ତାହା ତ ଛୁଇଁବା ବି ଠିକ୍ ନୁହେଁ ଆଉ ପିଲାଙ୍କୁ ଅଣ୍ଡା ଖୁଆଇଲେ କ'ଣ ହୁଏ ? ଶରୀର ଏତେ ଉତ୍ତେଜକମୟ ହୋଇଯାଏ ଯେ କଣ୍ଟ୍ରୋଲରେ ରହେ ନାହିଁ । ଆମ 'ଭେଜିଟେରିଆନ ଫୁଡ଼' (ଶାକାହାରୀ ଭୋଜନ) ତ ବହୁତ ଭଲ, ପଛେ କଞ୍ଚା ରହୁ । ଡାକ୍ତରଙ୍କର ଏଥିରେ ଦୋଷ ନଥାଏ । ସେମାନେ ତ ତାଙ୍କର ସମଝ୍ ଏବଂ ବୁଦ୍ଧି ଅନୁସାରେ କୁହନ୍ତି । ଆମକୁ ଆମ ସଂସ୍କାରର ରକ୍ଷା କରିବାର ଅଛି ନା ! ଆମେ ସଂସ୍କାରୀ ଘରର ଲୋକ ।

**ପ୍ରଶ୍ନକର୍ତ୍ତା :** ଆମେରିକାରେ ଦାଦା ଅନେକ ପିଲାଙ୍କୁ ଏକଦମ 'ଟର୍ନ' (ପରିବର୍ତ୍ତନ) କରି ଦେଇଛନ୍ତି ।

**ଦାଦାଶ୍ରୀ :** ହଁ, ସେମାନଙ୍କର ମାତା-ପିତା ଅଭିଯୋଗ ନେଇ ଆସିଥିଲେ ଯେ ଆମ ପିଲାମାନେ ବିଗିଡ଼ି ଯାଉଛନ୍ତି, ତାଙ୍କର କ'ଣ କରିବୁ ? ମୁଁ କହିଲି, 'ତୁମେ କେବେ ସୁଧୁରିଥିଲ ଯେ ପିଲାମାନେ ବିଗିଡ଼ି ଗଲେ ! ତୁମେ ମାଂସାହାର କରୁଛ ?' ତେବେ କହିଲେ, 'ହଁ, କେବେ କେବେ ।' 'ମଦ ପିଇବା ଟା ?' ତ କହିଲେ, 'ହଁ , କେବେ କେବେ ।' ଏଣୁ ଏ ପିଲାମାନେ ବୁଝନ୍ତି ଯେ ଆମ ବାପା କରୁଛନ୍ତି ଏଣୁ ଏହା କରିବା ଯୋଗ୍ୟ ଜିନିଷ ଅଟେ । ଯାହା ହିତକାରୀ ଅଟେ ତାହା ହିଁ ଆମ ବାପା କରୁଥିବେ ନା ? ଏସବୁ ତୁମକୁ ଶୋଭା ଦେଉନାହିଁ । ପୁଣି ସେ ପିଲାମାନଙ୍କୁ ମାଂସାହାର ଛଡ଼େଇ ଦେଲି । ସେ ପିଲାମାନଙ୍କୁ କହିଲି ଯେ 'କ'ଣ ଏ ଆଳୁ ତୁ କାଟି ପାରିବୁ ? କ'ଣ ଏ ଅମୃତଭଣ୍ଡା ତୁ କାଟି ପାରିବୁ ? କ'ଣ ଏ ଆପେଲ୍(ସେଓ) ତୁ କାଟି ପାରିବୁ ? ଏସବୁ କାଟି ପାରିବୁ ?' 'ହଁ, ସବୁ କାଟି ପାରିବି ।' ମୁଁ କହିଲି, 'ବୋଇତାଳୁ ଏତେ ବଡ଼ ହୋଇଥିବ, ତେବେ ?' 'ଆରେ ! ତାହା ମଧ୍ୟ କାଟି ପାରିବି ।' 'କାକୁଡ଼ି ଏତେ ବଡ଼ ହୋଇଥିବ ତେବେ ତାହା ମଧ୍ୟ କାଟି ପାରିବି ।' 'ସେହି ସମୟରେ 'ହାର୍ଟ' (ହୃଦୟ) ଉପରେ ପ୍ରଭାବ ପଡ଼ିବ ?' କହିଲା, 'ନା ।' ପୁଣି ମୁଁ ପଚାରିଲି, 'ଛେଳି କାଟି ପାରିବୁ ?' ସେତେବେଳେ କହିଲା, 'ନା ।' 'କୁକୁଡ଼ା କାଟି ପାରିବୁ ?' ସେତେବେଳେ କହିଲା, 'ନା, ମୋ ଦ୍ୱାରା କଟିବ ନାହିଁ ।' ଏଣୁ ଯାହା ତୋ ହାର୍ଟ କାଟିବାକୁ 'ଏକ୍ସେପ୍ଟ' (ସ୍ୱୀକାର) କରେ, କେବଳ ସେତିକି ଜିନିଷ ତୁ ଖାଇବୁ । ତୋ ହାର୍ଟ ଏକ୍ସେପ୍ଟ କରେ ନାହିଁ, ହାର୍ଟକୁ ପସନ୍ଦ ନୁହେଁ, ନ ରୁଚେ ସେମିତି ଜିନିଷ ଖାଇବୁ ନାହିଁ । ନହେଲେ ତାହାର ପରିଣାମ ବିପରୀତ ହେବ ଏବଂ ସେ ପରମାଣୁ ତୋ ହାର୍ଟ ଉପରେ ପ୍ରଭାବ ପକାଇବେ । ପରିଣାମ ସ୍ୱରୁପ, ପିଲାମାନେ ସବୁ ଭଲ ଭାବରେ ବୁଝିଗଲେ ଏବଂ ଛାଡ଼ିଦେଲେ ।

(ପ୍ରସିଦ୍ଧ ଲେଖକ) 'ବର୍ନାଡ଼ ଶା'ଙ୍କୁ କେହି ପଚାରିଲା, 'ଆପଣ ମାଂସାହାର କାହିଁକି କରୁନାହାନ୍ତି ?' ସେ କହିଲେ, 'ମୋ ଶରୀର ଶ୍ମଶାନଘାଟ ନୁହେଁ, ଏହା ଛେଳି-କୁକୁଡ଼ାଙ୍କ ଶ୍ମଶାନଘାଟ ନୁହେଁ ।' କିନ୍ତୁ ତାହାର ଫାଇଦା କ'ଣ ? ସେତେବେଳେ ସେ କହିଲେ, 'ଆଇ ୱାଣ୍ଟ ଟୁ ବି ଏ ସିଭିଲାଇଜ୍‌ଡ ମ୍ୟାନ ।' (ମୁଁ ସୁସଂସ୍କୃତ ମଣିଷ ହେବାକୁ ଚାହୁଁଛି) । ତଥାପି କୁହନ୍ତି, କ୍ଷତ୍ରିୟଙ୍କୁ ଏହି ଅଧିକାର ଅଛି, ମାତ୍ର ଯଦି ତାଙ୍କଠାରେ କ୍ଷତ୍ରିୟତା ଥିବ, ତେବେ ଅଧିକାର ଅଛି ।

**ପ୍ରଶ୍ନକର୍ତ୍ତା :** ଏହି ଛୋଟ ପିଲାଙ୍କୁ ମଗଦଲ (ଏକ ପ୍ରକାର ଅଧିକ ଘିଅବାଲା ମିଠାଇ) ଖୁଆନ୍ତି, ତାହା ଖୁଆଇ ପାରିବୁ ?

**ଦାଦାଶ୍ରୀ :** ଖୁଆଇ ପାରିବା ନାହିଁ, ମଗଦଲ ଖୁଆଇ ପାରିବା ନାହିଁ । ଛୋଟ ପିଲାଙ୍କୁ ମଗଦଲ, ଶିରା, ଘିଅ ଜାତୀୟ ବେଶୀ ଖୁଆଇବ ନାହିଁ । ତାଙ୍କୁ ସାଧା ଭୋଜନ ଦେବ ଏବଂ କ୍ଷୀର ମଧ୍ୟ କମ ଦେବା ଉଚିତ । ପିଲାମାନଙ୍କୁ ଏସବୁ ନଦେବା ଉଚିତ । ଲୋକେ ତ କ୍ଷୀର ତିଆରି ଜିନିଷ ବାରମ୍ବାର ଖୁଆଇ ଚାଲିଥାନ୍ତି । ଏପରି ଜିନିଷ ଖୁଆଇବ ନାହିଁ । ଆବେଗ (ଉତ୍ତେଜନା) ବଢ଼ିବ ଏବଂ ବାର ବର୍ଷର ହେଉ ହେଉ ତା'ର ଦୃଷ୍ଟି ବିଗିଡ଼ିବାକୁ ଲାଗିବ । ଆବେଗ କମ ହେବ, ଏପରି ଭୋଜନ ପିଲାମାନଙ୍କୁ ଦେବା ଉଚିତ । ଏସବୁ ତ ବିଚାରରେ ହିଁ ନାହିଁ । ଜୀବନ କିପରି ଜିଇଁବା ଉଚିତ, ଏହାର ସମଝ ହିଁ ନାହିଁ ନା !

**ପ୍ରଶ୍ନକର୍ତ୍ତା :** ଆମକୁ କିଛି କହିବାର ନଥିବ, କିନ୍ତୁ ମାନି ନିଅନ୍ତୁ ଯେ ଆମ ପୁଅ ଚୋରି କରୁଥିବ ତେବେ କ'ଣ ଚୋରି କରିବାକୁ ଦେବୁ ?

**ଦାଦାଶ୍ରୀ :** ଦେଖାଇବା ପାଇଁ ବିରୋଧ କର, କିନ୍ତୁ ଭିତରେ ସମଭାବ ରଖ । ବାହାରେ ଦେଖେଇବାରେ ବିରୋଧ ଆଉ ସେ ଚୋରି କରେ ତାହା ଉପରେ ତିଳେ ମାତ୍ର ନିର୍ଦ୍ଦୟତା ହେବାକୁ ନଦେବା ଉଚିତ । ଯଦି ଭିତରେ ସମଭାବ ନରହିବ ତେବେ ନିର୍ଦ୍ଦୟତା ହେବ ଏବଂ ସାରା ଜଗତ ନିର୍ଦ୍ଦୟ ହୋଇଯାଏ ।

ତା'କୁ ବୁଝାଅ ଯେ 'ଯାହା ପାଖରୁ ଚୋରି କଲୁ, ତା'ର ପ୍ରତିକ୍ରମଣ ଏହିପରି କରିବୁ ଏବଂ କେତେ ପ୍ରତିକ୍ରମଣ କଲୁ ତାହା ମୋତେ ଜଣାଇବୁ । ତେବେ ପୁଣି ଠିକ ହୋଇଯିବ । ତା'ପରେ ତୁ ଚୋରି ନ କରିବା ପାଇଁ ପ୍ରତିଜ୍ଞା କର । ଆଉ ଚୋରି କରିବି ନାହିଁ ଏବଂ ଯାହା ହୋଇଯାଇଛି ତାହାର କ୍ଷମା ମାଗୁଛି ।' ଏହିପରି ବାରମ୍ବାର ବୁଝାଇବା ଦ୍ୱାରା ଏହି ଜ୍ଞାନ ଫିଟ୍ ହୋଇଯିବ । ଯାହାଫଳରେ ଆସନ୍ତା ଜନ୍ମରେ ପୁଣି ଚୋରି କରିବ ନାହିଁ । ଏହା ତ କେବଳ ଇଫେକ୍ଟ (ପରିଣାମ) ଅଟେ, ଅଲଗା ନୂଆ ଯଦି ନ ଶିଖାଯାଏ ତେବେ ପୁଣି ନୂଆ ସୃଷ୍ଟି ହେବ ନାହିଁ ।

ଏ ପୁଅ ମୋ ପାଖରେ ସବୁ ଭୁଲ ସ୍ୱୀକାର କରେ । ଚୋରି କରେ ତାହା ମଧ୍ୟ ସ୍ୱୀକାର କରିନିଏ । ଆଲୋଚନା ତ, ଗଜବ ପୁରୁଷ ହୋଇଥିବେ, ସେହିଠାରେ ହୋଇପାରିବ । ଯଦି ଏପରି ସବୁ ହେବ ତେବେ ହିନ୍ଦୁସ୍ତାନର ଆଶ୍ଚର୍ଯ୍ୟଜନକ ପରିବର୍ତ୍ତନ ହୋଇଯିବ !

## (୮) ନୂଆ ଜେନେରେଶନ, ହେଲ୍‌ଦି ମାଇଣ୍ଡବାଲା

**ଦାଦାଶ୍ରୀ :** ରବିବାର ଦିନ ପାଖରେ ସତସଙ୍ଗ୍ ହେଉଛି, ତେବେ କାହିଁକି ଆସୁନାହଁ ?

**ପ୍ରଶ୍ନକର୍ତ୍ତା :** ରବିବାର ଦିନ ଟି.ଭି. ଦେଖିବାକୁ ଥାଏ ନା, ଦାଦାଜୀ !

**ଦାଦାଶ୍ରୀ :** ଟି.ଭି. ଆଉ ତୁମର କ'ଣ ସମ୍ବନ୍ଧ ? ଏ ଚଷମା ଲାଗି ଗଲାଣି, ତଥାପି ଟି.ଭି. ଦେଖୁଛ ? ଆମ ଦେଶ ଏପରି ଅଟେ ଯେ ଟି.ଭି. ଦେଖିବାକୁ ପଡ଼େ ନାହିଁ, ନାଟକ ଦେଖିବାକୁ ପଡ଼େ ନାହିଁ, ସେସବୁ ଏଇଠିକୁ ଏଇଠି ରାସ୍ତାରେ ହେଉଥାଏ ନା !

**ପ୍ରଶ୍ନକର୍ତ୍ତା :** ଆଧ୍ୟାତ୍ମ ରାସ୍ତାରେ ଚାଲିବାର ସମୟ ଯେତେବେଳେ ଆସି ପହଞ୍ଚିବ ସେତେବେଳେ ଟି.ଭି. ଦେଖିବା ବନ୍ଦ ହୋଇଯିବ ନା ?

**ଦାଦାଶ୍ରୀ :** କୃଷ୍ଣ ଭଗବାନ ଗୀତାରେ କହିଛନ୍ତି ଯେ ମନୁଷ୍ୟ ବ୍ୟର୍ଥ ସମୟ ବିଗାଡୁଅଛି । ରୋଜଗାର ପାଇଁ ଚାକିରିକୁ ଯିବା ଅନର୍ଥ କୁହାଯାଏ ନାହିଁ । ଯେପର୍ଯ୍ୟନ୍ତ ସେ ଦୃଷ୍ଟି ନ ମିଳିଛି, ସେପର୍ଯ୍ୟନ୍ତ ଏହି ଦୃଷ୍ଟି ଛୁଟେ ନାହିଁ ।

ଲୋକମାନେ ବି ପଶୁଙ୍କ ପରି ଶରୀରରେ ଦୁର୍ଗନ୍ଧବାଲା କାଦୁଅ କେବେ ମଳନ୍ତି ? ଯେତେବେଳେ ତାଙ୍କୁ ଅର୍ନ୍ତଦାହ ହୁଏ । ଏ ଟି.ଭି. ସିନେମା ସବୁ ଦୁର୍ଗନ୍ଧବାଲା କାଦୁଅ ପରି ହିଁ ଅଟେ । ସେଥିରୁ କିଛି ସାରତତ୍ତ୍ୱ ବାହାରେ ନାହିଁ । ମୋତେ ଟି.ଭି. ପ୍ରତି କିଛି ବିରୋଧ ନାହିଁ । ପ୍ରତ୍ୟେକ ଜିନିଷ ଦେଖିବା ପାଇଁ ଛାଡ଼ ଥାଏ କିନ୍ତୁ ଗୋଟିଏ ପଟେ ପାଞ୍ଚଟା ଦଶରେ ଟି.ଭି. କାର୍ଯ୍ୟକ୍ରମ ଥିବ ଏବଂ ଅନ୍ୟ ପଟେ ପାଞ୍ଚଟା ଦଶରେ ସତସଙ୍ଗ୍ ଥିବ, ତେବେ କ'ଣ ପସନ୍ଦ କରିବ ? ଏଗାରଟାରେ ପରୀକ୍ଷା ଥିବ ଆଉ ଏଗାରଟାରେ ଭୋଜନ କରିବାର ଥିବ ତେବେ କ'ଣ କରିବ ? ଏହିପରି ସମଝ ରହିବା ଉଚିତ ।

**ପ୍ରଶ୍ନକର୍ତ୍ତା :** ରାତି ଡେରି ଯାଏଁ ଟି.ଭି. ଦେଖୁଛନ୍ତି, ଏଣୁ ପୁଣି ଶୋଉ ନାହାନ୍ତି ନା ?

**ଦାଦାଶ୍ରୀ :** କିନ୍ତୁ ଟି.ଭି. ତ ତୁମେ କିଣି ଆଣିଲ ସେଥିପାଇଁ ଦେଖୁଛନ୍ତି ନା ? ତୁମେ ହିଁ ସବୁ ବିଗାଡ଼ିଛ ପିଲାଙ୍କୁ । ଏହି ମାତା-ପିତା ହିଁ ପିଲାମାନଙ୍କୁ ବିଗାଡ଼ିଛନ୍ତି, ଉପରୁ ଟି.ଭି. ଆଣିଲେ ଘରକୁ ! ପ୍ରଥମରୁ କ'ଣ କମ୍ ତୋଫାନ(ସମସ୍ୟା) ଥିଲା, ଯେ ଆଉ ଗୋଟେ ବଢ଼େଇଲ ?

ନୂଆ ପ୍ୟାଣ୍ଟ ପିନ୍ଧି ବାରମ୍ବାର ଆଇନା ଦେଖନ୍ତି । ଆରେ, ଆଇନା କ'ଣ ଦେଖୁଛୁ ? ଏ କାହାର ନକଲ କରୁଅଛ, ଏହା ତ ବୁଝ ! ଅଧ୍ୟାତ୍ମବାଲାଙ୍କ ନକଲ କଲ ନା ଭୌତିକବାଲାଙ୍କ ନକଲ କଲ ? ଯଦି ଭୌତିକବାଲାଙ୍କ ନକଲ କରିବାର ଅଛି ତେବେ ସେ ଆଫ୍ରିକାବାଲା ଅଛନ୍ତି, ସେମାନଙ୍କର ନକଲ କାହିଁକି କରୁନାହଁ ? କିନ୍ତୁ ଏ ତ ସାହେବଙ୍କ ପରି ଲାଗନ୍ତି, ସେଥିପାଇଁ ନକଲ କରିବା ଆରମ୍ଭ କଲେ । କିନ୍ତୁ ତୋ ପାଖରେ ଯୋଗ୍ୟତା ତ ନାହିଁ । କେଉଁଠିକାର ସାହେବ ହୋଇ ବୁଲୁଛୁ ? କିନ୍ତୁ ସାହେବ ହେବାପାଇଁ ଏମିତି ଆଇନାରେ ଦେଖେ, ବାଳ ସଜାଡ଼େ ଏବଂ ମାନେ ଯେ ଏବେ 'ଅଲରାଇଟ୍' ହୋଇଗଲା । ଉପରୁ ପୁଣି ପାଇଜାମା ପିନ୍ଧି ପଛରୁ ଏମିତି ଥାପୁଡ଼େଇ ବୁଲୁଥାଏ । ଆରେ, ବିନା କାରଣରେ କାହିଁକି ଥାପୁଡ଼ଉଛୁ ? କେହି ଦେଖିବାବାଲା ନାହିଁ, ସମସ୍ତେ ନିଜ ନିଜ କାମରେ ଲାଗିଛନ୍ତି ! ସମସ୍ତେ ନିଜ-ନିଜ ଚିନ୍ତାରେ ପଡ଼ିଛନ୍ତି !

ତୋତେ ଦେଖିବାର ଫୁରସତ କାହାକୁ ଅଛି ? ସମସ୍ତେ ନିଜ-ନିଜ ଝଂଝଟ୍‌ରେ ପଡ଼ିଛନ୍ତି । କିନ୍ତୁ ନିଜକୁ ନିଜେ କେ ଜାଣି କ'ଣ ମାନି ବସିଛନ୍ତି ?

କେହି ପୁରୁଣା ପିଢ଼ିବାଲା ଯଦି ପିଲାଙ୍କ ସହ କିଚ୍-କିଚ୍ କରୁଥିବ ତେବେ ମୁଁ ତାଙ୍କୁ ପଚାରେ ଯେ 'ତୁମେ ଛୋଟଥିଲ, ସେତେବେଳେ ତୁମ ବାପା ବି ତୁମକୁ କିଛି କହୁଥିଲେ ?' ସେତେବେଳେ କୁହନ୍ତି ଯେ, 'ସେ ମଧ୍ୟ କିଚ୍-କିଚ୍ କରୁଥିଲେ ।' ତାଙ୍କ ବାପାଙ୍କୁ ପଚାରିବା ଯେ 'ତୁମେ ଛୋଟଥିଲ ସେତେବେଳେ ?' ତେବେ କହିବେ 'ଆମ ବାପା ବି କିଚ୍-କିଚ୍ କରୁଥିଲେ ।' ଅର୍ଥାତ୍ ଏହା 'ଆଗରୁ ଚାଲି ଆସିଛି ।'

ପୁଅ ପୁରୁଣା କଥା ସ୍ୱୀକାର କରିବାକୁ ପ୍ରସ୍ତୁତ ନାହିଁ । ସେଥିପାଇଁ ଏ ଅସୁବିଧା ସୃଷ୍ଟି ହୋଇଛି । ମୁଁ ମା-ବାପଙ୍କୁ ମର୍ଡନ୍(ଆଧୁନିକ) ହେବା ପାଇଁ କୁହେ ତେବେ ସେମାନେ ହୁଅନ୍ତି ନାହିଁ । ଆଉ ହେବେ ବି କେମିତି ? ମର୍ଡନ୍ ହେବା କିଛି ସହଜ କଥା ନୁହେଁ ।

ଆମ ଦେଶ ୟୁଜ୍‌ଲେଶ(ନିକମ୍ମା) ହୋଇଗଲାଣି ! କିଛି ଲୋକ ଜାତିର ବହୁତ ତିରସ୍କାର କରନ୍ତି । ଜଣେ ଅନ୍ୟଜଣଙ୍କ ସହ ବସନ୍ତି ନାହିଁ, ଭେଦଭାବ ରଖନ୍ତି । ଉପରକୁ ହାତ ରଖି ପ୍ରସାଦ ଦିଏ ! କିନ୍ତୁ ଏ ନୂଆ ପିଢ଼ି ହେଲ୍‌ଦୀ ମାଇଣ୍ଡବାଲା ଅଟେ, ବହୁତ ଭଲ ଅଟେ !

ପିଲାମାନଙ୍କ ପାଇଁ ଭଲ ଭାବନା କରିଚାଲ । ସବୁ ଭଲ ସଂଯୋଗ ମିଳିଯିବ । ନହେଲେ ଏ ପିଲାମାନଙ୍କ ମଧ୍ୟରେ କୌଣସି ସୁଧାର ହେବାର ନାହିଁ । ପିଲାମାନେ

ସୁଧୁରିବେ, କିନ୍ତୁ ଆପେ-ଆପେ ପ୍ରକୃତି ସୁଧାରିବ । ପିଲାମାନେ ବହୁତ ଭଲ ଅଟନ୍ତି । ଯେମିତି କୌଣସି କାଳରେ ନଥିଲେ ଏମିତି ପିଲା ଅଛନ୍ତି ଆଜି !

ଏହି ପିଲାଙ୍କ ପାଖରେ ଏମିତି କେଉଁ ଗୁଣ ଥିବ ଯେ ମୁଁ ଏପରି କହୁଛି ଯେ ଯେମିତି କୌଣସି କାଳରେ ନଥିଲେ ଏମିତି ଗୁଣ ଏହି ପିଲାମାନଙ୍କ ପାଖରେ ଅଛି ! ବିଚରାଙ୍କ ଠାରେ କୌଣସି ପ୍ରକାର ତିରସ୍କାର ନାହିଁ, କିଛି ନାହିଁ । କେବଳ ମୋହୀ ଅଟନ୍ତି । ସେହି କାରଣରୁ ସିନେମାରେ ଏବଂ ଅନ୍ୟ ଜାଗାରେ ଭଟକୁଥା'ନ୍ତି । ପୂର୍ବେ ତ ଏତେ ତିରସ୍କାର ଯେ ବ୍ରାହ୍ମଣର ପୁଅ ଅନ୍ୟମାନଙ୍କୁ ଛୁଏଁ ବି ନାହିଁ । କ'ଣ ଅଛି ଏବେ ଏମିତି ଝାମେଲା ?

**ପ୍ରଶ୍ନକର୍ତ୍ତା :** ଏପରି କିଛି ନାହିଁ । ବିଲକୁଲ ବି ନାହିଁ ।

**ଦାଦାଶ୍ରୀ :** ସବୁ ମାଲ ଶୁଦ୍ଧ ହୋଇଗଲା ଏବଂ ଲୋଭ ମଧ୍ୟ ନାହିଁ, ମାନ ପାଇଁ ବି ଚିନ୍ତା ନାହିଁ । ଏବେ ଯାଏଁ ତ ସବୁ ଅଶୁଦ୍ଧ ମାଲ ଥିଲା, ମାନୀ-କ୍ରୋଧୀ-ଲୋଭୀ ! ଆଉ ଏମାନେ ତ ମୋହୀ ଅଟନ୍ତି ବିଚରାମାନେ !

**ପ୍ରଶ୍ନକର୍ତ୍ତା :** ଆପଣ କହୁଛନ୍ତି ଯେ ବର୍ତ୍ତମାନର ଜେନେରେଶନ 'ହେଲ୍‌ଦୀ ମାଇଣ୍ଡବାଲା' ଅଟେ ଆଉ ଅନ୍ୟପଟେ ଦେଖିବା ତେବେ ସମସ୍ତେ ବ୍ୟସନୀ ହୋଇଗଲେଣି, ଆଉ କେଜାଣି କ'ଣ କ'ଣ ହେଲେଣି ?

**ଦାଦାଶ୍ରୀ :** ପଛେ ସେମାନେ ବ୍ୟସନୀ ଦିଶନ୍ତୁ କିନ୍ତୁ ସେ ବିଚରାଙ୍କୁ ଯଦି ରାସ୍ତା ନ ମିଳେ ତେବେ କ'ଣ କରିବେ ? ସେମାନଙ୍କ ମାଇଣ୍ଡ ହେଲ୍‌ଦୀ ଅଟେ ।

**ପ୍ରଶ୍ନକର୍ତ୍ତା :** ହେଲ୍‌ଦୀ ମାଇଣ୍ଡ ମାନେ କ'ଣ ?

**ଦାଦାଶ୍ରୀ :** ହେଲଦୀ ମାଇଣ୍ଡ ମାନେ ତୋର-ମୋର ର ବେଶୀ ଚିନ୍ତା କରନ୍ତି ନାହିଁ ଆଉ ଆମେ ଛୋଟ ଥିଲେ ସେତେବେଳେ, ବାହାରେ କାହାର କିଛି ପଡ଼ିଥିବ, କିଛି ଦେଖିଲେ ତେବେ ନେଇ ନେବାର ଇଚ୍ଛା ହେଉଥିଲା । କାହା ଘରକୁ ଭୋଜନ କରିବା ପାଇଁ ଯାଇଥିବା ତେବେ ଘରେ ଯେତିକି ଖାଆନ୍ତି, ତାହାଠୁ ଟିକିଏ ଅଧିକ ଖାଇ ନେଉଥିଲେ । ଛୋଟ ପିଲାଙ୍କଠୁ ନେଇ ବୁଢ଼ା ପର୍ଯ୍ୟନ୍ତ ସମସ୍ତେ ମମତାବାଲା ଥିଲେ ।

ଆରେ ! ଏ 'ଡବଲ ବେଡ୍'ର ସିଷ୍ଟମ ହିନ୍ଦୁସ୍ତାନରେ ହେଉଥିବ ? କି ପ୍ରକାର ପଶୁ ଅଟନ୍ତି ? ହିନ୍ଦୁସ୍ତାନରେ ସ୍ତ୍ରୀ-ପୁରୁଷ କେବେ ସାଥିରେ ଗୋଟିଏ ରୁମ୍‌ରେ ରହୁ ନଥିଲେ ! ସବୁବେଳେ ଅଲଗା ରୁମରେ ରହୁଥିଲେ ! ତାହା ବଦଳରେ ଆଜି ଏହା

ଦେଖ ତ ଟିକିଏ ! ବର୍ତ୍ତମାନ ତ ବାପ ହିଁ ବେଡ୍‌ରୁମ ବନେଇ ଦିଏ, 'ଡବଲ ବେଡ୍' କିଣି ଦେଇ ! ଏହାଦ୍ୱାରା ପିଲାମାନେ ବୁଝିଗଲେ ଯେ ଏହି ଦୁନିଆ ଏହିପରି ଚାଲେ ବୋଧହୁଏ । ତୁମକୁ ଜଣା ଅଛି ଯେ ଆଗରୁ ସ୍ତ୍ରୀ-ପୁରୁଷଙ୍କ ବିଛଣା ଅଲଗା ରୁମରେ ରହୁଥିଲା । ଜଣା ନାହିଁ ତୁମକୁ ? ସେସବୁ ମୁଁ ଦେଖିଥିଲି । ତୁମେ ତୁମ ଜମାନାରେ ଡବଲ ବେଡ୍ ଦେଖିଥିଲ ?

## (୯) ମାତା-ପିତାଙ୍କ ଅଭିଯୋଗ

ଜଣେ ଭାଇ ମୋତେ କୁହେ, ମୋ ପୁତୁରା ସବୁଦିନ ନଅଟାରେ ଉଠୁଛି । ଘରେ କିଛି କାମ କରୁନାହିଁ । ପୁଣି ଘରର ସବୁ ସଦସ୍ୟଙ୍କୁ ପଚାରିଲି ଯେ ସେ ଜଲ୍‌ଦୀ ଉଠୁନାହିଁ, ଏକଥା ତୁମ ସମସ୍ତଙ୍କୁ ପସନ୍ଦ ନାହିଁ ? ସେତେବେଳେ ସମସ୍ତେ କହିଲେ, 'ଆମକୁ ପସନ୍ଦ ନାହିଁ, ତଥାପି ସେ ଜଲ୍‌ଦୀ ଉଠୁ ହିଁ ନାହିଁ ।' ମୁଁ ପଚାରିଲି, 'ସୂର୍ଯ୍ୟନାରାୟଣ ଆସିବା ପରେ ଉଠୁଛି ନା ନାହିଁ ?' ତେବେ କହିଲେ, 'ତାହା ପରେ ବି ଏକ ଘଣ୍ଟା ପରେ ଉଠୁଛି ।' ଏହା ଉପରେ ମୁଁ କହିଲି ଯେ 'ସୂର୍ଯ୍ୟନାରାୟଣଙ୍କର ବି ମର୍ଯ୍ୟାଦା ରଖୁନାହିଁ, ତେବେ ତ ବହୁତ ବଡ଼ ବ୍ୟକ୍ତି ହୋଇଥିବ ! ନହେଲେ ଲୋକେ ସୂର୍ଯ୍ୟନାରାୟଣଙ୍କ ଆସିବା ପୂର୍ବରୁ ସବୁ ଉଠି ଯାଆନ୍ତି, କିନ୍ତୁ ଏ ତ ସୂର୍ଯ୍ୟନାରାୟଣଙ୍କର ବି ଖାତିର କରୁନାହିଁ ।' ପୁଣି ସେମାନେ କହିଲେ, ଆପଣ ତା'କୁ ଟିକିଏ ଗାଳି କରନ୍ତୁ । ମୁଁ କହିଲି, 'ମୁଁ ଗାଳି କରିପାରିବି ନାହିଁ । ମୁଁ ଗାଳି କରିବା ପାଇଁ ଆସିନାହିଁ, ମୁଁ ବୁଝାଇବା ପାଇଁ ଆସିଛି । ମୋର ଗାଳି କରିବାର ବ୍ୟାପାର ହିଁ ନାହିଁ, ମୋର ବୁଝାଇବାର ବ୍ୟାପାର । ପରେ ସେ ପୁଅକୁ କହିଲି, 'ଦର୍ଶନ କରିନେ ଏବଂ ସବୁଦିନ କହିବୁ ଯେ ଦାଦା ମୋତେ ଜଲଦୀ ଉଠିବା ପାଇଁ ଶକ୍ତି ଦିଅନ୍ତୁ ।' ଏତିକି ତା'ପାଖରୁ କରାଇବା ପରେ ଘରର ସବୁଲୋକଙ୍କୁ କହିଲି, ଏବେ ସେ ଚାହା ପିଇବା ସମୟରେ ବି ଯଦି ନ ଉଠେ ତେବେ ତା'କୁ ପଚାରିବ ଯେ, 'ଭାଇ, ଏହା ଘୋଡ଼େଇ ଦେବି ତୋତେ ? ଜାଡ଼ର ଶୀତ, ଘୋଡ଼ାଇବାକୁ ଥିବ ତେବେ ଘୋଡ଼ାଇ ଦେବି ।' ଏହିପରି ଥଟ୍ଟାରେ ନୁହେଁ, କିନ୍ତୁ ସତରେ ତା'କୁ ଘୋଡ଼ାଇଦେବ । ଘରଲୋକେ ଏହିପରି କଲେ । ପରିଣାମ ସ୍ୱରୂପ କେବଳ ଛ'ମାସରେ ସେ ଏତେ ଜଲଦୀ ଉଠିବାକୁ ଲାଗିଲା ଯେ ଘରର ସବୁଲୋକଙ୍କର ଅଭିଯୋଗ ଚାଲିଗଲା ।

**ପ୍ରଶ୍ନକର୍ତ୍ତା :** ଆଜିର ପିଲାମାନେ ପଢ଼ିବା ଅପେକ୍ଷା ଖେଳିବାରେ ବେଶୀ ରୁଚି ରଖନ୍ତି, ସେମାନଙ୍କୁ ପାଠପଢ଼ା ଆଡ଼କୁ ନେଇଯିବା ପାଇଁ ସେମାନଙ୍କଠାରୁ କିପରି କାମ ଆଦାୟ କରାଯିବ, ଯାହାଦ୍ୱାରା ପିଲାମାନଙ୍କ ପ୍ରତି କ୍ଲେଶ ଉତ୍ପନ୍ନ ନ ହେବ ?

**ଦାଦାଶ୍ରୀ :** ପୁରସ୍କାର ଯୋଜନା ବାହାର କର ନା! ପିଲାଙ୍କୁ କୁହ ଯେ ପ୍ରଥମ ନମ୍ବର ଆସିବ ତା'କୁ ଏତିକି ପୁରସ୍କାର ଦେବି ଏବଂ ଛଅ ନମ୍ବରରେ ଆସିବ, ତା'କୁ ଏତିକି ପୁରସ୍କାର ଆଉ ପାସ ହେବ ତା'କୁ ଏତିକି ପୁରସ୍କାର । କିଛି ସେମାନଙ୍କର ଉତ୍ସାହ ବଢୁ ଏପରି କର । ତା'କୁ ତୁରନ୍ତ ଫାଇଦା ହେଉଥିବ ଏପରି କିଛି ଦେଖାଅ, ତେବେ ସେ ଆହ୍ୱାନ ସ୍ୱୀକାର କରିବ । ଅନ୍ୟ କ'ଣ ରାସ୍ତା କରିବ ? ନଚେତ ତାଙ୍କ ଉପରେ ପ୍ରେମ ରଖ । ପ୍ରେମ ଥିବ ତେବେ ପିଲାମାନେ ସବୁକିଛି ମାନନ୍ତି । ମୋ କଥା ସବୁପିଲା ମାନନ୍ତି । ମୁଁ ଯାହା କୁହେ ତାହା କରିବା ପାଇଁ ପ୍ରସ୍ତୁତ, ଅର୍ଥାତ ଆମେ ସେମାନଙ୍କୁ ବୁଝାଇ ଚାଲିବା ଉଚିତ । ପରେ ଯାହା କରେ ତାହା ଠିକ ।

**ପ୍ରଶ୍ନକର୍ତ୍ତା :** ମୂଳ ସମସ୍ୟା ଏହା ଯେ ପଢ଼ିବା ପାଇଁ ପିଲାମାନଙ୍କୁ ଆମେ ଅନେକ ପ୍ରକାରେ ବୁଝାଉ କିନ୍ତୁ ଆମ କହିବା ପରେ ମଧ୍ୟ ସେମାନେ ବୁଝନ୍ତି ନାହିଁ, ଆମର ଶୁଣନ୍ତି ନାହିଁ ।

**ଦାଦାଶ୍ରୀ :** ସେମାନେ ଶୁଣୁ ନାହାନ୍ତି ଏପରି ନୁହେଁ, କିନ୍ତୁ ତୁମକୁ ମା' ହେବା ଆସିଲା ନାହିଁ, ସେଥିପାଇଁ । ଯଦି ମା ହେବା ଆସିଥାନ୍ତା ତେବେ କେମିତି ଶୁଣି ନଥାନ୍ତେ ? କ'ଣ ପାଇଁ ପୁଅ ମାନୁନାହିଁ ? କାହିଁକିନା 'ନିଜ ମାତା-ପିତାଙ୍କ କହିବା ନିଜେ ସେ କେବେ ମାନି ହିଁ ନଥିଲା ନା!'

**ପ୍ରଶ୍ନକର୍ତ୍ତା :** ଦାଦା, ସେଥିରେ ବାତାବରଣର ଦୋଷ ଅଛି ନା ନାହିଁ ?

**ଦାଦାଶ୍ରୀ :** ନା, ବାତାବରଣର ଦୋଷ ନାହିଁ । ମାତା-ପିତାଙ୍କୁ ବାସ୍ତବରେ ମାତା-ପିତା ହେବା ଆସିଲା ହିଁ ନାହିଁ । ପ୍ରଧାନମନ୍ତ୍ରୀ ହେବା, ସେଥିରେ କମ ଦାୟିତ୍ୱ ଅଛି, କିନ୍ତୁ ମାତା-ପିତା ହେବା, ସେଥିରେ ବହୁତ ଅଧିକ ଦାୟିତ୍ୱ ।

**ପ୍ରଶ୍ନକର୍ତ୍ତା :** ତାହା କିପରି ?

**ଦାଦାଶ୍ରୀ :** ପ୍ରଧାନମନ୍ତ୍ରୀ ହେବାରେ ତ ଲୋକଙ୍କ ଅପରେଶନ ହେବ । ଏଥିରେ ତ ପିଲାମାନଙ୍କର ହିଁ ଅପରେଶନ ହେବ । ଘରେ ପହଞ୍ଚିବ ତେବେ ପିଲାମାନେ ଖୁସି ହୋଇଯିବେ ଏପରି ହେବା ଉଚିତ ଆଉ ଆଜିକାଲି ତ ପିଲାମାନେ କ'ଣ କହୁଛନ୍ତି 'ଆମ ବାପା ଘରକୁ ନ ଆସିଲେ ଭଲ ।' ଆରେ, ଏମିତି ହେବ ତେବେ ପୁଣି କ'ଣ ହେବ ?

ଏଥିପାଇଁ ମୁଁ ଲୋକଙ୍କୁ କୁହେ, 'ଭାଇ, ପିଲାଙ୍କୁ ଷୋହଳ ବର୍ଷ ହେବାପରେ 'ଫ୍ରେଣ୍ଡ (ମିତ୍ର) ରୂପରେ ସ୍ୱୀକାରୀ ନେବ', ଏପରି କହି ନାହିଁ ? 'ଫ୍ରେଣ୍ଡଲି ଟୋନ୍' (ମୈତ୍ରୀପୂର୍ଣ୍ଣ ବ୍ୟବହାର) ହେବ ନା, ତେବେ ନିଜ ବାଣୀ ଭଲ ବାହାରେ, ନଚେତ

ସବୁଦିନ ବାପ ହେବାକୁ ଯିବା ତେବେ କିଛି ସାର ବାହାରେ ନାହିଁ। ପୁଅ ଚାଳିଷ ବର୍ଷର ହୋଇଥିବ ଆଉ ଆମେ ବାପପଣିଆ ଦେଖାଇବା ତେବେ କ'ଣ ହେବ?

**ପ୍ରଶ୍ନକର୍ତ୍ତା :** କିନ୍ତୁ ଦାଦା, ବୁଢ଼ା ଲୋକ ବି ଯଦି ଆମ ସହିତ ଏପରି ବ୍ୟବହାର କରିବେ, ତାଙ୍କ ବିଚାର ପୁରୁଣା ହୋଇଯାଇଥିବ, ତେବେ ଆମେ ସେମାନଙ୍କୁ କିପରି ହ୍ୟାଣ୍ଡେଲ କରିବା ଉଚିତ?

**ଦାଦାଶ୍ରୀ :** ଏହି ଗାଡ଼ି ଠିକ୍ ଟାଇମ୍‌ରେ, ଯେତେବେଳେ ଜଲ୍‌ଦୀରେ ଥିବ ସେତେବେଳେ, ପଙ୍କ୍‌ଚର ହୋଇଯାଏ, ତେବେ କ'ଣ ଆମେ ତା' ହ୍ୱିଲ୍(ଚକା)କୁ ପିଟିବା?

**ପ୍ରଶ୍ନକର୍ତ୍ତା :** ନା।

**ଦାଦାଶ୍ରୀ :** ଠିକ୍ ଟାଇମରେ, ଜଲଦୀ ଥିବ ଆଉ ଟାୟାର ପଙ୍କ୍‌ଚର ହୋଇଯାଏ ତେବେ ହ୍ୱିଲକୁ ମାରିବା ଉଚିତ? ସେତେବେଳେ ତ ଫଟାଫଟ୍ ସମ୍ଭାଳି ନିଜ କାମ କରିନେବା ଉଚିତ। ଗାଡ଼ିରେ ପଙ୍କ୍‌ଚର ତ ହେଉଥାଏ। ସେହିପରି ବୁଢ଼ାଲୋକଙ୍କୁ ମଧ୍ୟ ପଙ୍କ୍‌ଚର ହୁଏ। ଆମକୁ ସମ୍ଭାଳି ନେବା ଉଚିତ। ପଙ୍କ୍‌ଚର ହେବ ତେବେ ଗାଡ଼ିକୁ ମାର-ପିଟ କରିପାରିବା?

**ପ୍ରଶ୍ନକର୍ତ୍ତା :** ଦୁଇ ପୁଅ ପରସ୍ପର ଲଢୁଥିବେ, ଆମେ ଜାଣିଛୁ ଯେ ଦୁହିଁଙ୍କ ମଧ୍ୟରୁ କେହି ବୁଝିବେ ନାହିଁ, ତେବେ ସେତେବେଳେ ଆମକୁ କ'ଣ କରିବା ଉଚିତ?

**ଦାଦାଶ୍ରୀ :** ଥରେ ଦୁହିଁଙ୍କୁ ବସାଇ କହିଦେବ ଯେ ପରସ୍ପର ଝଗଡ଼ା କରିବାରେ ଫାଇଦା ନାହିଁ, ତାହାଦ୍ୱାରା ଲକ୍ଷ୍ମୀ ଚାଲିଯାଏ।

**ପ୍ରଶ୍ନକର୍ତ୍ତା :** କିନ୍ତୁ ସେମାନେ ମାନିବାକୁ ପ୍ରସ୍ତୁତ ନ ହୁଅନ୍ତି ତେବେ କ'ଣ କରିବୁ, ଦାଦାଜୀ?

**ଦାଦାଶ୍ରୀ :** ଯେମିତି ଅଛି ସେମିତି ରହିବାକୁ ଦିଅ।

**ପ୍ରଶ୍ନକର୍ତ୍ତା :** ପୁଅମାନେ ପରସ୍ପର ମଧ୍ୟରେ ଲଢ଼ନ୍ତି ଏବଂ ସେହି ମାମଲା ବଡ଼ ଆକାର ନେଇ ନିଏ, ତେବେ ଆମେ କହୁ ଯେ ଏହା ଏପରି କେମିତି ହୋଇଗଲା?

**ଦାଦାଶ୍ରୀ :** ତାଙ୍କୁ ବୋଧ ହେବାକୁ ଦିଅ ନା, ପରସ୍ପର ଲଢ଼ିଲେ ତାଙ୍କୁ ନିଜକୁ ମାଲୁମ ହେବ, ବୁଝାପଡ଼ିବ ନା? ଏମିତି ବାରମ୍ବାର ଅଟକାଇଲେ ବୋଧ ହେବ ନାହିଁ। ଜଗତ ତ କେବଳ ନିରୀକ୍ଷଣ କରିବା ଯୋଗ୍ୟ ଅଟେ!

(ବାସ୍ତବରେ) ଏ ପିଲାମାନେ କାହାର ନୁହନ୍ତି, ଏହା ତ ମୁଣ୍ଡ ଉପରେ ଆସି

ପଡ଼ିଥିବା ଜଞ୍ଜାଳ ଅଟେ ! ଏଣୁ ଏମାନଙ୍କୁ ସାହାଯ୍ୟ କରିବ ନିଶ୍ଚୟ କିନ୍ତୁ ଭିତରୁ ଡ୍ରାମାଟିକ ରହିବ ।

ପ୍ରଥମେ ଅଭିଯୋଗ କରିବା ପାଇଁ କିଏ ଆସେ ? କଳିଯୁଗରେ ତ ଯିଏ ଦୋଷୀ ହୋଇଥିବ, ସେ ହିଁ ପ୍ରଥମେ ଅଭିଯୋଗ ନେଇ ଆସେ ଆଉ ସତ୍ୟଯୁଗରେ ଯିଏ ନିର୍ଦ୍ଦୋଷ ହୋଇଥିବ ସେ ପ୍ରଥମେ ଅଭିଯୋଗ ନେଇ ଆସେ । ଏହି କଳିଯୁଗରେ ନ୍ୟାୟ କରିବା ବାଲା ବି ଏପରି ଅଟନ୍ତି ଯେ ଯାହାର ପ୍ରଥମେ ଶୁଣନ୍ତି ତା' ପକ୍ଷରେ ବସିଯାନ୍ତି ।

ଘରେ ଚାରି ଜଣ ପିଲା ଥିବେ, ସେମାନଙ୍କ ମଧ୍ୟରୁ ଦୁଇ ଜଣଙ୍କର କିଛି ଭୁଲ ନଥିବ ତଥାପି ବାପ ସେମାନଙ୍କୁ ଗାଳି କରିବାରେ ଲାଗିଥାଏ ଆଉ ଅନ୍ୟ ଦୁହେଁ ସବୁବେଳେ ଭୁଲ କରୁଥିବେ ତଥାପି କେହି ସେମାନଙ୍କୁ କିଛି କୁହନ୍ତି ନାହିଁ । ଏସବୁ ତାହାର ପଛର ରୁଟକଜ (ମୂଳ କାରଣ)କୁ ନେଇ ହୁଏ । ଆମ ଘରେ ଦୁଇ ସନ୍ତାନ ଥିବେ, ତେବେ ଦୁହେଁ ସମାନ ଲାଗିବା ଉଚିତ । ଯଦି ଆମେ କାହା ପକ୍ଷରେ ରହିବା ଯେ 'ଏ ବଡ଼ ଦୟାଳୁ ଅଟେ ଆଉ ଛୋଟବାଲା ଟିକିଏ କଞ୍ଚା (ଅନଭିଜ୍ଞ) ଅଟେ ।' ତେବେ ସବୁ ବିଗିଡ଼ି ଯାଏ । ଦୁହେଁ ସମାନ ଲାଗିବା ଉଚିତ ।

**ପ୍ରଶ୍ନକର୍ତ୍ତା :** ପୁଅ କଥା-କଥାରେ ଜଲ୍‌ଦି ରୁଷି ଯାଉଛି ।

**ଦାଦାଶ୍ରୀ :** ବହୁତ ମହଙ୍ଗା ଅଟେ ନା ! ବହୁତ ମହଙ୍ଗା, ପୁଣି କ'ଣ ହେବ ? ଝିଅ ଶସ୍ତା ଅଟେ, ସେଥିପାଇଁ ବିଚାରି ରୁଷେ ନାହିଁ ।

**ପ୍ରଶ୍ନକର୍ତ୍ତା :** ଏ ରୁଷିବା କାହିଁକି ହେଉଥିବ, ଦାଦାଜୀ ?

**ଦାଦାଶ୍ରୀ :** ଏମାନେ ତ ମନାଇବାକୁ ଯାଆନ୍ତି ନା, ସେଥିପାଇଁ ରୁଷନ୍ତି । ମୋ ପାଖରେ ରୁଷିବ ତେବେ ଜାଣିବି ! ମୋ ସାଥିରେ କେହି ରୁଷନ୍ତି ନାହିଁ । ଆଉ ପୁଣି ଡାକିବି ହିଁ ନାହିଁ ନା ! ଖାଉ କି ନଖାଉ, ଆଉ ଡାକିବି ନାହିଁ । ମୁଁ ଜାଣିଛି, ଏହାଦ୍ୱାରା ଖରାପ ଅଭ୍ୟାସ ପଡ଼ିଯାଏ, ଅଧିକ ଖରାପ ଅଭ୍ୟାସ ପଡ଼େ । ନା, ନା, ପୁଅ ଖାଇ ନେ, ପୁଅ ଖାଇ ନେ । ଆରେ, ଭୋକ ଲାଗିବ ତେବେ ପୁଅ ମନକୁ ମନ ଖାଇନେବ, କୁଆଡ଼େ ଯିବ ? ସେମିତିରେ ତ ମୋତେ ଅଲଗା କଳା ବି ଆସେ । ବହୁତ ଟେଢ଼ା ହୋଇଥିବ ତେବେ, ଭୋକିଲା ଥିବ ତଥାପି ଖାଇବ ନାହିଁ । ଏଣୁ ମୁଁ ତା' ଆତ୍ମା ସହ ଭିତରେ ବିଧି କରେ, ତୁମକୁ ଏମିତି କରିବାର ନାହିଁ । ତୁମେ ଯାହା କରୁଅଛ, ତାହା କର । କିନ୍ତୁ ମୋ ସହ ରୁଷନ୍ତି ନାହିଁ ଆଉ ଏଠି ମୋ ପାଖରେ ରୁଷିଲେ ଫାଇଦା ବି କ'ଣ ହେବ ?

**ପ୍ରଶ୍ନକର୍ତ୍ତା :** ଦାଦାଜୀ ସେହି କଳା ଶିଖାଇ ଦିଅନ୍ତୁ ନା! କାହିଁକିନା ଏହି ରୁଷିବା-ମନାଇବା ତ ନିତିଦିନିଆ ହୋଇ ଗଲାଣି ସମସ୍ତଙ୍କର । ଯଦି ଏମିତି ଗୋଟେ ଅଧେ ଚାବି ଦେଇ ଦେବେ ତେବେ ସମସ୍ତଙ୍କର ନିରାକରଣ ହୋଇଯିବ ।

**ଦାଦାଶ୍ରୀ :** ଆମକୁ ବହୁତ ଗରଜ ଥିବ ସେତେବେଳେ ସେ ରୁଷେ । ଏତେ ଗରଜ କ'ଣ ପାଇଁ ?

**ପ୍ରଶ୍ନକର୍ତ୍ତା :** ଏହାର ଅର୍ଥ କ'ଣ, ମୁଁ ବୁଝିପାରିଲି ନାହିଁ । ବହୁତ ଗରଜ ଥିବ ତେବେ ରୁଷନ୍ତି ? କାହାକୁ ଗରଜ ଥାଏ ।

**ଦାଦାଶ୍ରୀ :** ସାମ୍ନାବାଲାର ଗରଜ । ରୁଷିବା ବାଲା ସେତେବେଳେ ରୁଷେ, ଯେତେବେଳେ ସାମ୍ନାବାଲାକୁ ତା'ର ଗରଜ ଥିବ ।

**ପ୍ରଶ୍ନକର୍ତ୍ତା :** ଅର୍ଥାତ୍ ଆମକୁ ଗରଜ ହିଁ ଦେଖାଇବାର ନାହିଁ ?

**ଦାଦାଶ୍ରୀ :** ଗରଜ ରହିବା ହିଁ ଉଚିତ ନୁହେଁ । କ'ଣ ପାଇଁ ଗରଜ ? କର୍ମର ଉଦୟାନୁସାରେ ଯାହା ହେବାର ଥିବ ତାହା ହେବ, ପୁଣି ତା'ର ଗରଜ କାହିଁକି ରଖିବା ? ଆଉ ପୁଣି କର୍ମର ଉଦୟ ହିଁ ଅଟେ । ଗରଜ ଦେଖାଇଲେ ଜିଦିରେ ଚଢ଼ନ୍ତି ଓଲଟା ।

**ପ୍ରଶ୍ନକର୍ତ୍ତା :** ଛୋଟ ପିଲାମାନଙ୍କର ରାଗ ଦୂର କରିବା ପାଇଁ ତାଙ୍କୁ କିପରି ବୁଝାଇବୁ ?

**ଦାଦାଶ୍ରୀ :** ତାଙ୍କ ରାଗ ଦୂର କରି କ'ଣ ଫାଇଦା ?

**ପ୍ରଶ୍ନକର୍ତ୍ତା :** ଆମ ସହ ଝଗଡ଼ା କରିବେ ନାହିଁ ।

**ଦାଦାଶ୍ରୀ :** ତାହା ପାଇଁ କିଛି ଅଲଗା ଉପାୟ କରିବା ଅପେକ୍ଷା ତାଙ୍କ ମାତା-ପିତାଙ୍କୁ ଏପରି ରହିବା ଉଚିତ ଯେ ସେମାନଙ୍କର ରାଗ ପିଲାମାନେ ନ ଦେଖିବେ । ସେମାନଙ୍କୁ ରାଗିବାର ଦେଖି ପିଲାମାନଙ୍କୁ ଲାଗେ ଯେ 'ମୋ ବାପା ରାଗୁଛନ୍ତି, ତେବେ ମୁଁ ତାଙ୍କଠାରୁ ଶହେ ଗୁଣା ରାଗିବି ।' ଯଦି ତୁମେ ବନ୍ଦ କରିବ, ତେବେ (ତାଙ୍କର) ଆପେ ଆପେ ବନ୍ଦ ହୋଇଯିବ । ମୁଁ ବନ୍ଦ କରିଛି, ମୋ ରାଗ ବନ୍ଦ ହୋଇଯାଇଛି ତେଣୁ ମୋ ସହ କେହି ରାଗନ୍ତି ହିଁ ନାହିଁ । ମୁଁ କୁହେ, ରାଗ ତଥାପି ରାଗନ୍ତି ନାହିଁ । ପିଲାମାନେ ମଧ୍ୟ ରାଗନ୍ତି ନାହିଁ, ମୁଁ ମାରେ ତେବେ ମଧ୍ୟ ରାଗନ୍ତି ନାହିଁ ।

**ପ୍ରଶ୍ନକର୍ତ୍ତା :** ପିଲାଙ୍କୁ ଉଚିତ ମାର୍ଗରେ ଆଣିବା ପାଇଁ ମାତା-ପିତାଙ୍କୁ କର୍ତ୍ତବ୍ୟ ତ ପାଳନ କରିବା ଉଚିତ ନା, ଏଥିପାଇଁ ରାଗିବାକୁ ପଡ଼େ ନା ?

**ଦାଦାଶ୍ରୀ :** କାହିଁକି ରାଗିବାକୁ ପଡ଼ିବ ? ଏମିତି ହିଁ ବୁଝାଇ କହିବାରେ କ'ଣ ଅସୁବିଧା ? କ୍ରୋଧ(ରାଗ) ତୁମେ କର ନାହିଁ, ତୁମ ଦ୍ୱାରା ହୋଇଯାଏ । କରାଯାଉଥିବା କ୍ରୋଧ, କ୍ରୋଧରେ ଗଣାଯାଏ ନାହିଁ । ଆମେ ନିଜେ କ୍ରୋଧ କରନ୍ତି । ତୁମେ ତାକୁ ଧମକାଅ, ତାହାକୁ କ୍ରୋଧ କୁହାଯାଏ ନାହିଁ । ଅର୍ଥାତ କ୍ରୋଧ କର । କିନ୍ତୁ କ୍ରୋଧିତ ହୋଇଯାଉଛ ତୁମେ । କ୍ରୋଧ କରୁଥିବା ତେବେ ଅସୁବିଧା ନାହିଁ ।

**ପ୍ରଶ୍ନକର୍ତ୍ତା :** କ୍ରୋଧ ହୋଇଯିବାର କାରଣ କ'ଣ ?

**ଦାଦାଶ୍ରୀ :** 'ୱିକ୍‌ନେସ୍' । ତାହା 'ୱିକ୍‌ନେସ'(ଦୁର୍ବଳତା) ଅଟେ ! ଅର୍ଥାତ ସେ ନିଜେ କ୍ରୋଧ କରେ ନାହିଁ, ତାହା ତ କ୍ରୋଧ ହେବା ପରେ ନିଜକୁ ଜଣା ପଡ଼େ ଯେ ଏହା ଭୁଲ ହୋଇଗଲା, ଏପରି ନ ହେବା ଉଚିତ । ଅତଃ ଅଙ୍କୁଶ ତା' ହାତରେ ନାହିଁ । ଏହି ମେଶିନ ଗରମ ହୋଇଯାଏ, ତେବେ ସେହି ସମୟରେ ତୁମକୁ ଟିକିଏ ଥଣ୍ଡା ରହିବା ଉଚିତ । ଯେତେବେଳେ ଆପେ ଆପେ ଥଣ୍ଡା ହୋଇଯିବ, ସେତେବେଳେ ହାତ ମାରିବ ।

ପିଲାଙ୍କ ଉପରେ ତୁମେ ଚିଡୁଛ ତେବେ ତାହା ନୂଆ କରଜ ନେବା ପରି ଅଟେ, କାହିଁକିନା ଚିଡ଼ିବାରେ ଅସୁବିଧା ନାହିଁ, କିନ୍ତୁ ତୁମେ ଯେଉଁ 'ନିଜେ' ଚିଡୁଛ, ତାହା କ୍ଷତି କରେ ।

**ପ୍ରଶ୍ନକର୍ତ୍ତା :** ପିଲାଙ୍କୁ ଯେପର୍ଯ୍ୟନ୍ତ ଗାଳି ନକରିଛୁ, ସେପର୍ଯ୍ୟନ୍ତ ଶାନ୍ତ ହୁଅନ୍ତି ହିଁ ନାହିଁ, ଗାଳି ତ କରିବାକୁ ପଡ଼େ ନା !

**ଦାଦାଶ୍ରୀ :** ନା, ଗାଳି କରିବାରେ ଅସୁବିଧା ନାହିଁ । କିନ୍ତୁ 'ନିଜେ' ଗାଳି କରୁଛ ସେଥିପାଇଁ ତୁମ ମୁହଁ ବିଗିଡ଼ି ଯାଏ, ସେଥିପାଇଁ ତାହାର ଉତ୍ତରଦାୟିତ୍ୱ ଅଛି । ତୁମ ମୁହଁ ନ ବିଗିଡ଼େ, ଏପରି ଗାଳି କର, ମୁହଁ ଭଲ ରଖି ଗାଳି କର, ଖୁବ୍ ଗାଳିକର । ତୁମ ମୁହଁ ବିଗିଡ଼ି ଯାଏ ଅର୍ଥାତ ତୁମକୁ ଯାହା ଗାଳି କରିବାର ଅଛି ତାହା ତୁମେ ଅହଂକାର କରି ଗାଳି କରୁଛ ।

**ପ୍ରଶ୍ନକର୍ତ୍ତା :** ତେବେ ତ ପିଲାଙ୍କୁ ଏପରି ଲାଗିବ ଯେ ମିଛି ମିଛିକା ଗାଳି କରୁଛୁ !

**ଦାଦାଶ୍ରୀ :** ସେମାନେ ଏତିକି ଜାଣିବେ ତେବେ ବହୁତ ହୋଇଗଲା । ତେବେ ସେମାନଙ୍କୁ ପ୍ରଭାବ ପଡ଼ିବ, ନହେଲେ ପ୍ରଭାବ ପଡ଼ିବ ହିଁ ନାହିଁ । ତୁମେ ବହୁତ ଗାଳି କରିବ ତେବେ ସେମାନେ ବୁଝନ୍ତି ଯେ 'ଏମାନେ ଦୁର୍ବଳ ଲୋକ ଅଟନ୍ତି ।'

ସେମାନେ ମୋତେ କୁହନ୍ତି, 'ଆମ ବାପା ବହୁତ ଦୁର୍ବଳ ଲୋକ ଅଟନ୍ତି, ବହୁତ ଚିଡ଼ୁଛନ୍ତି ।'

**ପ୍ରଶ୍ନକର୍ତ୍ତା :** ଆମର ଗାଳି କରିବା ଏପରି ନ ହେବା ଉଚିତ ଯେ ଆମକୁ ହିଁ ମନରେ ବିଚାର ଆସିବାକୁ ଲାଗେ ଏବଂ ନିଜ ଉପରେ ତାହାର ପ୍ରଭାବ ହେଉଥାଏ !

**ଦାଦାଶ୍ରୀ :** ତାହା ତ ଭୁଲ ଅଟେ । ଗାଳି ଏପରି ନହେବା ଉଚିତ । ଗାଳି କରିବ ନାଟକୀୟ, ଯେମିତି ନାଟକରେ ଲଢ଼ନ୍ତି, ସେହିପରି ହେବା ଉଚିତ । ନାଟକରେ ଲଢ଼ନ୍ତି, 'କାହିଁକି ତୁ ଏମିତି କରୁଛୁ ଆଉ ଏମିତି ସେମିତି' ସବୁ କୁହନ୍ତି କିନ୍ତୁ ଭିତରେ କିଛି ବି ହୁଏ ନାହିଁ, ଏମିତି ଗାଳି କରିବାର ଅଛି ।

**ପ୍ରଶ୍ନକର୍ତ୍ତା :** ପିଲାଙ୍କୁ କହିବା ପରି ଲାଗେ, ସେତେବେଳେ ଗାଳି କରୁ, ସେତେବେଳେ ତାଙ୍କୁ ଦୁଃଖ ବି ହେଉଥିବ, ସେତେବେଳେ କ'ଣ କରିବୁ ?

**ଦାଦାଶ୍ରୀ :** ପୁଣି ଆମେ ଭିତରେ କ୍ଷମା ମାଗିନେବା । ଏ ଭଉଣୀକୁ ବହୁତ ବେଶୀ କହି ଦେଇଥିବ ଆଉ ତା'କୁ ଦୁଃଖ ହୋଇଥିବ ତେବେ ତୁମେ ଏ ଭଉଣୀକୁ କୁହ ଯେ କ୍ଷମା ଚାହୁଁଛି । ଯଦି ଏପରି କହି ପାରୁନାହଁ, ତେବେ ଅତିକ୍ରମଣ ହେଲା ଏଣୁ ଭିତରେ ପ୍ରତିକ୍ରମଣ କର । ତୁମେ ତ 'ଶୁଦ୍ଧାତ୍ମା ଅଟ' ସେଥିପାଇଁ ତୁମେ ଚନ୍ଦୁଭାଇଙ୍କୁ କହିବ ଯେ 'ପ୍ରତିକ୍ରମଣ କର ।' ତୁମକୁ ଉଭୟ ବିଭାଗ ଅଲଗା ରଖିବାର ଅଛି । ଏକାନ୍ତରେ ଭିତରେ ନିଜକୁ ନିଜେ କୁହ ଯେ 'ସାମ୍ନାବାଲାକୁ ଦୁଃଖ ନହେଉ' । ତଥାପି ପୁଅକୁ ଦୁଃଖ ହୁଏ ତେବେ ଚନ୍ଦୁଭାଇଙ୍କୁ କହିବ 'ପ୍ରତିକ୍ରମଣ କର ।'

**ପ୍ରଶ୍ନକର୍ତ୍ତା :** କିନ୍ତୁ ନିଜଠୁ ଛୋଟ ହୋଇଥିବ, ନିଜ ପୁଅ ହୋଇଥିବ, ତେବେ କ୍ଷମା କିପରି ମାଗିବୁ ?

**ଦାଦାଶ୍ରୀ :** ଭିତରୁ କ୍ଷମା ମାଗିବ, ହୃଦୟରୁ କ୍ଷମା ମାଗିବ । ତା' ଭିତରେ ଦାଦା ଦେଖା ଦେବେ ଏବଂ ତାଙ୍କ ସାକ୍ଷୀରେ ସେ ପୁଅର ଆଲୋଚନା-ପ୍ରତିକ୍ରମଣ-ପ୍ରତ୍ୟାଖ୍ୟାନ କରିଲେ ତୁରନ୍ତ ତା'କୁ ପହଞ୍ଚି ଯାଏ ।

**ପ୍ରଶ୍ନକର୍ତ୍ତା :** ଆମେ କାହାକୁ ଗାଳି କରୁ, କିନ୍ତୁ ତା'ର ଭଲ ପାଇଁ ଗାଳି କରୁଥିବୁ, ଯେମିତି ପିଲାମାନଙ୍କୁ ଗାଳି କରୁ, ତେବେ କ'ଣ ତାହା ପାପ କୁହାଯିବ ?

**ଦାଦାଶ୍ରୀ :** ନା, ତାହାଦ୍ୱାରା ପୁଣ୍ୟ ବନ୍ଧାହେବ । ପୁଅର ଭଲ ପାଇଁ ଗାଳି କରିବା-ମାରିବା ତେବେ ମଧ୍ୟ ପୁଣ୍ୟ ବନ୍ଧା ହୁଏ । ଭଗବାନଙ୍କ ଘରେ ଅନ୍ୟାୟ ହୁଏ ହିଁ ନାହିଁ ! ପୁଅ ଓଲଟା କରୁଛି ସେଥିପାଇଁ ପୁଅର ଭଲ ପାଇଁ ନିଜକୁ ବ୍ୟାକୁଳତା ହେଲା

ଏବଂ ତା'କୁ ଦୁଇ ଚଟକଣା ଲଗାଇ ଦେଲେ, ତଥାପି ତାହାର ପୁଣ୍ୟ ବନ୍ଧା ହୁଏ । ତାହାକୁ ଯଦି ପାପ ଗଣାଯିବ ତେବେ ଏ କ୍ରମିକ ମାର୍ଗର ସବୁ ସାଧୁ-ଆଚାର୍ଯ୍ୟଙ୍କ ମଧ୍ୟରୁ କାହାର ବି ମୋକ୍ଷ ହୋଇପାରିବ ନାହିଁ । ସାରାଦିନ ଶିଷ୍ୟ ପ୍ରତି ଆକୁଳିତ ରହନ୍ତି, କିନ୍ତୁ ତାହାଦ୍ୱାରା ପୁଣ୍ୟ ବନ୍ଧାହୁଏ । କାହିଁକିନା ଅନ୍ୟର ଭଲ ପାଇଁ ସେ କ୍ରୋଧ କରେ । ନିଜ ଭଲ ପାଇଁ କ୍ରୋଧ କରିବା ପାପ ଅଟେ । କେତେ ସୁନ୍ଦର ନ୍ୟାୟ ! କେତେ ନ୍ୟାୟପୂର୍ଣ୍ଣ ଅଟେ ! ଭଗବାନ ମହାବୀରଙ୍କ ନ୍ୟାୟ କେତେ ସୁନ୍ଦର ଅଟେ ! ଏହି ନ୍ୟାୟ ତ ଧର୍ମ-ନିକିତି ହିଁ ଅଟେ ନା !!

ଅତଃ ପିଲାମାନଙ୍କୁ ତାଙ୍କ ଭଲ ପାଇଁ ଗାଳିକର, ମାର, ତେବେ ପୁଣ୍ୟ ବନ୍ଧାହୁଏ । କିନ୍ତୁ 'ମୁଁ ବାପ ଅଟେ, ତା'କୁ ଟିକିଏ ମାରିବାକୁ ତ ପଡ଼ିବ ନା ?' ଏପରି ଭାବ ଭିତରେ ପ୍ରବିଷ୍ଟ ହେଲା ତେବେ ପୁଣି ପାପ ବନ୍ଧା ହେବ । ଏହିପରି ଯଦି ସଠିକ ସମଝ ନ ଥିବ ତେବେ ପୁଣି ସେଥିରେ ଏପରି ବିଭାଜନ ପଡ଼ିଯିବ !

ଅତଃ ବାପ ପୁଅ ଉପରେ ଯଦି ତା' ହିତ ପାଇଁ ଆକୁଳିତ ହୁଏ ତାହାର ଫଳ କ'ଣ ହେବ ? ପୁଣ୍ୟ ବନ୍ଧା ହେବ ।

**ପ୍ରଶ୍ନକର୍ତ୍ତା :** ବାପ ତ ଆକୁଳାଏ କିନ୍ତୁ ପୁଅ ବି ସାମ୍ନାରୁ ଆକୁଳାଏ ତେବେ କ'ଣ ହୁଏ ?

**ଦାଦାଶ୍ରୀ :** ପୁଅ ପାପ ବାନ୍ଧେ ! କ୍ରମିକ ମାର୍ଗରେ 'ଜ୍ଞାନୀପୁରୁଷ' ଶିଷ୍ୟ ଉପରେ ଆକୁଳାନ୍ତି ତେବେ ତାହାର ଜବରଦସ୍ତ ପୁଣ୍ୟ ବନ୍ଧାହୁଏ, ପୁଣ୍ୟାନୁବନ୍ଧୀ ପୁଣ୍ୟ ବନ୍ଧାହୁଏ । ସେ ଆକୁଳତା ବ୍ୟର୍ଥ ଯାଏନାହିଁ । ଏ ଶିଷ୍ୟ ନୁହଁନ୍ତି ତାଙ୍କର ପିଲା, ନାହିଁ କିଛି ନେବା-ଦେବା, ତଥାପି ଶିଷ୍ୟ ଉପରେ ଆକୁଳାନ୍ତି ।

ଏଠି ମୋ ପାଖରେ ଗାଳି-ଧମକ ବିଲକୁଲ ହୁଏ ନାହିଁ ! ଗାଳିକଲେ ମଣିଷ ସ୍ପଷ୍ଟ କହି ପାରେ ନାହିଁ, କପଟ କରେ । ଏହି କାରଣରୁ ସଂସାରରେ ଏସବୁ କପଟ ଜନ୍ମ ହୋଇଛି । ଦୁନିଆରେ ଗାଳି କରିବାର ଆବଶ୍ୟକତା ନାହିଁ । ପୁଅ ସିନେମା ଦେଖି ଆସେ ଆଉ ଆମେ ତା'କୁ ଗାଳି କରିବା ତେବେ ପରଦିନ ବାହାନା ବନାଇ, 'ସ୍କୁଲରେ କିଛି କାର୍ଯ୍ୟକ୍ରମ ଥିଲା' କହି ସିନେମା ଦେଖିବାକୁ ଯାଏ ! ଯାହା ଘରେ ମା' ଶକ୍ତ ଥିବ, ତା' ପୁଅକୁ ବ୍ୟବହାର ଆସେ ନାହିଁ ।

**ପ୍ରଶ୍ନକର୍ତ୍ତା :** କୋଲ୍ଡଡ୍ରିଙ୍କ୍ସ ବେଶୀ ପିଅନ୍ତି, ଚକୋଲେଟ ବେଶୀ ଖାଆନ୍ତି, ସେତେବେଳେ ଗାଳି କରେ ।

**ଦାଦାଶ୍ରୀ :** ସେଥିରେ ଗାଳି କରିବାର ଆବଶ୍ୟକତା କେଉଁଠି ! ତା'କୁ

ବୁଝାଇବା ଉଚିତ ଯେ ବେଶୀ ଖାଇଲେ କ'ଣ କ୍ଷତି ହେବ! ତୁମକୁ କିଏ ଗାଳି କରୁଛି ? ଏହା ତ ବଡ଼ ପଣିଆର ମିଛ ଅହଂକାର ଅଟେ ! 'ମା' ହୋଇ ବସିଛି, ବଡ଼ ! ମା ହେବା ଆସେ ନାହିଁ ଆଉ ସାରାଦିନ ପିଲାଙ୍କୁ ଗାଳି କରୁଛ ! ତୁମକୁ ଯଦି ଶାଶୁ ଗାଳି କରୁଥାନ୍ତା ତେବେ ମାଲୁମ ପଡ଼ନ୍ତା । ପିଲାଙ୍କୁ ଗାଳି କରିବା ଶୋଭା ଦେଉଥିବ ? ପିଲାଙ୍କୁ ବି ଏପରି ଲାଗେ ଯେ ଏ (ମା) ତ ବୁଢ଼ୀମାଠୁ ବି ଖରାପ । ଏଣୁ ପିଲାଙ୍କୁ ଗାଳି କରିବା ଛାଡ଼ିଦିଅ । ଶାନ୍ତିରେ ବୁଝାଇବ ଯେ ଏସବୁ ଖାଇବା ଉଚିତ ନୁହେଁ, ଏହାଦ୍ୱାରା ତୋ ଶରୀର ବିଗିଡ଼ିବ ।

ସେ ଭୁଲ କରେ ତଥାପି ତା'କୁ ବାରମ୍ବାର ପିଟ ନାହିଁ । ଭୁଲ କରେ ଆଉ ବାରମ୍ବାର ପିଟିବା ତେବେ କ'ଣ ହେବ ? ଜଣେ ବ୍ୟକ୍ତି ତ ଯେମିତି କପଡ଼ା ଧୋଉଛି, ସେମିତି ଧୁଲାଇ କରୁଥିଲା । ଆରେ ଭାଇ, ବାପ ହୋଇ ପୁଅର ଏ କି ଦଶା କରୁଛୁ ? ସେହି ସମୟରେ ପୁଅ ମନରେ କ'ଣ ସ୍ଥିର କରେ, ଜାଣିଛ ? ସହନ ନ ହୁଏ ତେବେ ମନରେ ଭାବେ, 'ବଡ଼ ହେବାପରେ ତୁମକୁ ମାରିବି, ଦେଖିବ ।' ଭିତରେ ଠାଣି ନିଏ । ବଡ଼ ହେବା ପରେ ପୁଣି ତା'କୁ ମାରେ ମଧ୍ୟ ।

ମାରିଲେ ଜଗତ ସୁଧୁରେ ନାହିଁ । ଗାଳି କଲେ କିମ୍ବା ଚିଡ଼ିଲେ ମଧ୍ୟ କେହି ସୁଧୁରେ ନାହିଁ । ଠିକ୍ କରି ଦେଖାଇଲେ ସୁଧୁରେ । ଯେତେ କହିବା ସେତେ ପାଗଳାମି ।

ଜଣେ ଭାଇ ଥିଲେ । ସେ ରାତି ଦି'ଟାରେ କେଜାଣି କ'ଣ କ'ଣ କରି ଘରକୁ ଆସୁଥିଲେ( !) ତାହାର ବର୍ଣ୍ଣନା କରିବା ଯୋଗ୍ୟ ନୁହେଁ । ତୁମେ ବୁଝିଯାଅ । ପରେ ଘର ଲୋକେ ସ୍ଥିର କଲେ ଯେ ଯାକୁ ଗାଳି କରିବା ନହେଲେ ଘରେ ପଶିବାକୁ ଦେବା ନାହିଁ, କ'ଣ ଉପାୟ କରିବା ? ପରେ ସେମାନେ ଏହାର ଅନୁଭବ କରି ଆସିଲେ । ତା' ବଡ଼ ଭାଇ କହିବାକୁ ଗଲେ ତେବେ କହିଲା, 'ତୁମକୁ ନ ମାରି ଛାଡ଼ିବି ନାହିଁ ।' ପୁଣି ଘରର ସବୁଲୋକ ମୋତେ ପଚାରିବାକୁ ଆସିଲେ, 'ଏହାର କ'ଣ କରିବୁ ? ଏ ତ ଏମିତି କହୁଛି ।' ସେତେବେଳେ ମୁଁ ଘରବାଲାଙ୍କୁ କହିଦେଲି ଯେ 'କେହି ତା'କୁ ଏକ ଅକ୍ଷର ବି କୁହ ନାହିଁ । ଯଦି କହିବା ତେବେ ସେ ଅଧିକ ଉଦଣ୍ଡ ହୋଇଯିବ, ଆଉ ଘରକୁ ପଶିବାକୁ ଦେବନାହିଁ ତେବେ ବିଦ୍ରୋହ କରିବ । ତା'କୁ ଯେତେବେଳେ ଆସିବାର ଥିବ ଆସୁ, ଆଉ ଯେତେବେଳେ ଯିବାର ଥିବ ଯାଉ । ଆମକୁ 'ରାଇଟ୍' (ଠିକ୍) ବି କହିବାର ନାହିଁ କି 'ରଙ୍ଗ୍' (ଭୁଲ) ବି କହିବାର ନାହିଁ । ରାଗ୍ ବି କରିବାର ନାହିଁ, ଦ୍ୱେଷ ବି କରିବାର ନାହିଁ । ସମତା ରଖିବାର ଅଛି, କରୁଣା ରଖିବାର ଅଛି ।' ତିନି-ଚାରି ବର୍ଷ ପରେ ସେ ଭାଇ ଠିକ ରାସ୍ତାରେ ଆସିଗଲା ! ଆଜି

ସେ ବ୍ୟାପାରରେ ବହୁତ ସାହାଯ୍ୟ କରୁଛି । ଦୁନିଆ ବେକାର ନୁହେଁ, କିନ୍ତୁ କାମ ନେବା ଆସିବା ଦରକାର । ସମସ୍ତଙ୍କ ଭିତରେ ଭଗବାନ ଅଛନ୍ତି ଏବଂ ସମସ୍ତେ ଭିନ୍ନ-ଭିନ୍ନ କାମ ନେଇ ବସିଛନ୍ତି, ଏଣୁ ନାପସନ୍ଦ ଭଳି କିଛି ରଖିବ ନାହିଁ ।

ଜଣେ ବ୍ୟକ୍ତି ପାଇଖାନାର କବାଟକୁ ଗୋଇଠା ମାରୁଥିଲା । ମୁଁ ପଚାରିଲି, 'ଗୋଇଠା କାହିଁକି ମାରୁଛ ?' ତେବେ କହିଲା, 'ବହୁତ ସଫା କରୁଛି, ତଥାପି ଗନ୍ଧ ଆସୁଛି ।' କୁହ, ଏବେ ଏହା କେତେ ବଡ଼ ମୂର୍ଖତା କୁହାଯିବ ! ପାଇଖାନାର କବାଟକୁ ଗୋଇଠା ମାରେ ତଥାପି ଗନ୍ଧ ଆସେ ! ଏଥିରେ ଭୁଲ କାହାର ?

କେତେ ଲୋକ ତ ପିଲାଙ୍କୁ ବହୁତ ମାରନ୍ତି, ଏ କ'ଣ ମାରିବା ଜିନିଷ ଅଟେ ? ଏମାନେ ତ 'ଗ୍ଲାସୱେୟର୍' (କାଚ ନିର୍ମିତ ଦ୍ରବ୍ୟ) ପରି ଅଟନ୍ତି । ଗ୍ଲାସୱେୟର୍‌କୁ ଯତ୍ନରେ ରଖିବା ଉଚିତ । 'ଗ୍ଲାସୱେୟାର୍' କୁ ଏମିତି ଫିଙ୍ଗିବା ତେବେ ? 'ହ୍ୟାଣ୍ଡେଲ୍ ୱିଥ୍ କେୟାର ।' ଅର୍ଥାତ ସାବଧାନୀ ରଖ । ଏବେ ଏମିତି ମାରାମାରି କରନାହିଁ ।

ଏପରି ଅଟେ, ଏହି ଜନ୍ମର ପିଲାଙ୍କ ଚିନ୍ତା କରୁଛ କିନ୍ତୁ ପୂର୍ବଜନ୍ମରେ ଯେଉଁ ସନ୍ତାନ ଥିଲେ ତାଙ୍କର କ'ଣ କଲ ? ପ୍ରତ୍ୟେକ ଜନ୍ମରେ ସନ୍ତାନ ଛାଡ଼ି ଆସିଛନ୍ତି, ଯେଉଁଠି ବି ଜନ୍ମ ନେଲେ ସେ ସବୁଥିରେ ପିଲା ଛାଡ଼ି-ଛାଡ଼ି ଆସିଛନ୍ତି । ଏଡ଼ିକି ଛୋଟ-ଛୋଟଙ୍କୁ ବିଚରା ଭଟକି ଯିବେ, ଏମିତି ପିଲାଙ୍କୁ ଛାଡ଼ି ଆସିଛନ୍ତି । ସେଠାରୁ ଆସିବାକୁ ଚାହୁଁ ନଥିଲା, ତଥାପି ଏଠାକୁ ଆସିଲା । ପରେ ଭୁଲିଗଲା ଆଉ ପୁଣି ଏହି ଜନ୍ମରେ ଅଲଗା ପିଲା ! ତେବେ ପୁଣି ପିଲା ସମ୍ବନ୍ଧୀ କ୍ଳେଶ କାହିଁକି କରୁଛ ? ସେମାନଙ୍କୁ ଧର୍ମ ମାର୍ଗରେ ନେଇଯାଅ, ଭଲ ହୋଇଯିବେ ।

ଜଣେ ପିଲା ତ ଏମିତି ବାଲୁଙ୍ଗା ଥିଲା ଯେ ପିତା ଔଷଧ ପିଆଇବ ତେବେ ପିଉ ହିଁ ନଥିଲା, ତଣ୍ଟିରୁ ତଳକୁ ଗିଳୁ ହିଁ ନଥିଲା, କିନ୍ତୁ ତା' ମା ବି ପକ୍କା ଥିଲା । ପିଲା ଏତେ ବାଲୁଙ୍ଗା ତେବେ ମା କ'ଣ ସାଦାସିଧା ହେବ ?! ମା କ'ଣ କଲା, ତା' ନାକ ଦବେଇଲା ଆଉ ଔଷଧ ଫଟ କରି ତଣ୍ଟିରେ ଗଳି ଗଲା । ପରିଣାମ ସ୍ୱରୂପ ପିଲା ଆହୁରି ପକ୍କା ହୋଇଗଲା ! ପରଦିନ ଯେତେବେଳେ ପିଆଉ ଥିଲା ଆଉ ନାକ ଦବାଇବାକୁ ଗଲା ତେବେ ସେ ଫୁଉଉଉ କରି ମା'ର ଆଖିରେ ଉଡ଼ାଇଲା ! ଏ ତ ସେହି 'କ୍ୱାଲିଟୀ !' ମା ପେଟରେ ନଅ ମାସ ବିନା ଭଡ଼ାରେ ରହିଲା, ସେ ମୁନାଫା ଆଉ ଉପରୁ ଫୁଉଉ କରେ !

ଜଣେ ବାପ ମୋତେ କହୁଥିଲା ଯେ 'ମୋର ତିନି ନମ୍ବର ପୁଅ ବହୁତ ଖରାପ । ଦୁଇଜଣ ପୁଅ ଭଲ ।' ମୁଁ ପଚାରିଲି, 'ସେ ଖରାପ ଅଟେ ତେବେ ତୁମେ

କଣ କରିବ ?' କହିଲା 'କ'ଣ କରିବି ? ଦୁଇ ପୁଅଙ୍କୁ ମୋତେ କିଛି କହିବାକୁ ପଡୁନାହିଁ ଆଉ ଏହି ତୃତୀୟ ପୁଅ କାରଣରୁ ମୋ ପୁରା ଜୀବନ ବରବାଦ ହେବାକୁ ଲାଗିଲାଣି ।' ମୁଁ କହିଲି, 'କ'ଣ କରୁଛି ତୁମ ପୁଅ ?' ସେତେବେଳେ କହିଲା, 'ରାତି ଦେଢ଼ଟାରେ ଆସୁଛି, ମଦ ପିଇ ଆସୁଛି ସେ ।' ମୁଁ ପଚାରିଲି, 'ପୁଣି ତୁମେ କ'ଣ କରୁଛ ?' ତେବେ କହିଲା, 'ମୁଁ ଦୂରରୁ ଦେଖେ ତା'କୁ, ଯଦି ମୋ ମୁହଁ ଦେଖାଇବି ତେବେ ଗାଳି ଦେଉଛି । ମୁଁ ଦୂରରେ ରହି ଝରକାରେ ଦେଖୁଥାଏ ଯେ କ'ଣ କରୁଛି ?' ମୁଁ କହିଲି, 'ଦେଢ଼ଟାରେ ଘରକୁ ଆସିବା ପରେ କ'ଣ କରେ ?' ତେବେ କହିଲା, 'ଖାଇବା ପିଇବାର ତ କିଛି କଥା ହିଁ ନାହିଁ, ସେ ଆସିଲେ ତା'ର ବିଛଣା ବିଛେଇ ଦେବାକୁ ପଡ଼େ । ଆସି ତୁରନ୍ତ ଶୋଇଯାଏ ଏବଂ ଘୁଙ୍ଗୁଡ଼ି ମାରିବାକୁ ଲାଗେ ।' ଏହା ଉପରେ ମୁଁ କହିଲି, 'ତେବେ ଚିନ୍ତା କିଏ କରୁଛି ?' ତେବେ କହିଲା, 'ତାହା ତ ମୁଁ ହିଁ କରୁଛି ।'

ପରେ କୁହେ, 'ତାହାର ଏହି ହାଲ୍ ଦେଖି ମୋତେ ତ ରାତିସାରା ନିଦ ଆସୁନାହିଁ ।' ମୁଁ କହିଲି, 'ଏଥିରେ ଦୋଷ ତୁମର ଅଟେ, ସେ ତ ଆରାମରେ ଶୋଇ ଯାଉଛି । ନିଜ ଦୋଷ ନିଜେ ଭୋଗୁଛ । ପୂର୍ବଜନ୍ମରେ ତା'କୁ ମଦ ଅଭ୍ୟାସ କରାଇବାବାଲା ତୁ ହିଁ ଅଟୁ ।' ତା'କୁ ଶିଖାଇକି ଖସିଗଲେ । କ'ଣ ପାଇଁ ଶିଖାଇଲେ ? ଲାଳସା ଯୋଗୁଁ । ଅର୍ଥାତ ପୂର୍ବଜନ୍ମରେ ତା'କୁ ବିଗାଡ଼ି ଥିଲେ, ଓଲଟା ରାସ୍ତାରେ ଚଢ଼ାଇଥିଲେ । ତାହା ଶିଖାଇବାର ଫଳ ଆସିଛି ଏବେ । ଏବେ ତାହାର ଫଳ ଭୋଗ ଆରାମରେ ! ଯିଏ 'ଭୋଗେ ତା'ର ଭୁଲ !' ଦେଖ, ସେ ତ ଶୋଇଯାଉଛି ନା ଆରାମରେ ? ଆଉ ବାପ ସାରାରାତି ଚିନ୍ତା କରି କରି ଦେଢ଼ଟା ଯାଏଁ ଚେଇଁ ରୁହେ ଯେ କେବେ ଆସିବ, କିନ୍ତୁ ତା'କୁ କିଛି କହିପାରେ ନାହିଁ । ବାପ ଭୋଗେ, ଏଣୁ ଭୁଲ ବାପର ଅଟେ ।

ବୋହୂ ଭାବେ ଯେ ଶ୍ୱଶୁର ଅଲଗା ରୁମ୍‌ରେ ବସିଛନ୍ତି । ସେଥିପାଇଁ ସେ ଅନ୍ୟସହ କଥା ହୁଏ ଯେ 'ଶ୍ୱଶୁର ଟିକିଏ କମ ଅକଲ ଅଟନ୍ତି ।' ଏବେ ସେହି ସମୟରେ ଆମେ ସେଠାରେ ଛିଡ଼ା ହୋଇଥିବା ତେବେ ଆମକୁ ତାହା ଶୁଣିବାକୁ ମିଳେ, ତେବେ ଆମକୁ ଭିତରେ ପ୍ରଭାବ ହୁଏ । ସେତେବେଳେ ସେଠାରେ କ'ଣ ହିସାବ ଲଗାଇବା ଉଚିତ ଯେ ଯଦି ଆମେ ଅନ୍ୟ ଜାଗାରେ ବସିଥାନ୍ତେ ତେବେ କ'ଣ ହୋଇଥାନ୍ତା ? ତେବେ କିଛି ପ୍ରଭାବ ପଡ଼ି ନଥାନ୍ତା । ଅର୍ଥାତ ଏଠାକୁ ଆସିଲେ, ସେହି ଭୁଲର ଏହି ପ୍ରଭାବ ଅଟେ ! ଆମେ ଏହି ଭୁଲକୁ ସୁଧାରି ନେବା, ଏପରି ବୁଝି ଯେ

ଆମେ ଅନ୍ୟ କେଉଁଠି ବସିଥିଲେ ଏବଂ ଆମେ ଏହା ଶୁଣି ହିଁ ନଥିଲେ । ଏହିପରି ଏହି ଭୁଲକୁ ସୁଧାରି ନେବା ।

ମହାବୀର ଭଗବାନଙ୍କ ପଛରେ ବି ଲୋକ ଓଲଟା କହୁଥିଲେ । ଲୋକେ ତ କହିବେ, ଆମେ ନିଜ ଭୁଲ ଶେଷ କରିଦେବା । ତା'କୁ ଯାହା ଠିକ ଲାଗିଲା ସେମିତି କହିଲା, ଆଉ ଆମର ଖରାପ କର୍ମର ଉଦୟ ହୁଏ ତେବେଯାଇ ତା'ଦ୍ୱାରା ଏପରି ଓଲଟା କୁହାଯାଏ ।

ପିଲାଙ୍କ ଅହଙ୍କାର ଜାଗୃତ ହୋଇଯାଏ, ତା'ପରେ ତା'କୁ କିଛି ବି କହିପାରିବା ନାହିଁ ଆଉ ଆମେ କହିବା ବି କ'ଣ ପାଇଁ? ସେମାନେ ଝୁଣ୍ଟିଲେ ଶିଖିବେ । ପିଲାମାନେ ପାଞ୍ଚବର୍ଷର ହୋଇଥିବେ, ସେପର୍ଯ୍ୟନ୍ତ ତାଙ୍କୁ କହିବା ପାଇଁ ଛାଡ଼ । ଆଉ ପାଞ୍ଚରୁ ଷୋହଳ ବର୍ଷବାଲା ପିଲାଙ୍କୁ କଦାଚିତ କେବେ ଚାପୁଡ଼ା ବି ଲଗାଇବାକୁ ପଡ଼ିପାରେ । କିନ୍ତୁ କୋଡ଼ିଏ ବର୍ଷର ଯୁବା ହେବା ପରେ ଏପରି କରିପାରିବା ନାହିଁ । ତା'କୁ ଏକ ଅକ୍ଷର ବି କହିପାରିବା ନାହିଁ । ତା'କୁ କିଛି ବି କହିବା ଦୋଷ ହେବ । ନହେଲେ କେଉଁଦିନ ତୁମକୁ ବନ୍ଧୁକ ମାରିଦେଇ ପାରେ ।

'ଉପରେ ପଡ଼ି ଉପଦେଶ ଦେବନାହିଁ' ଏପରି ମୁଁ ଲେଖିଛି ମଧ୍ୟ! ଯଦି ତୁମକୁ କେହି କିଛି ପଚାରେ, ସେତେବେଳେ ତୁମକୁ ଉପଦେଶ ଦେବା ଉଚିତ ଆଉ ସେହି ସମୟରେ ଯାହା ଠିକ ଲାଗୁଥିବ ତାହା କହିଦେବ । ଉପଦେଶ ଦେବାପରେ ଏହା ମଧ୍ୟ କହିବ ଯେ 'ତୁମକୁ ଯେମିତି ଠିକ ଲାଗୁଛି ସେମିତି କରିବ । ମୁଁ ତ ତୁମକୁ ଏହା କହିଦେଲି ।' ତେବେ ପୁଣି ତାଙ୍କୁ ଖରାପ ଲାଗେ ଏପରି କିଛି କଥା ରହେ ନାହିଁ । ଅତଃ ଆମକୁ ଯାହା କିଛି ବି କହିବାର ଅଛି, ତାହା ପଛରେ ବିନୟ ରଖିବାର ଅଛି ।

ଏହି କାଳରେ କମ କହିବା ଭଳି ଭଲ କଥା ଆଉ କିଛି ବି ନାହିଁ । ଏହି କାଳରେ କଥା ପଥର ଲାଗେ, ଏପରି ବାହାରେ ଏବଂ ସମସ୍ତଙ୍କର ଏପରି ହୁଏ । ଏଣୁ ମିତଭାଷୀ ହୋଇଯିବା ଭଲ । କାହାରିକୁ କିଛି କହିବା ଭଳି ନୁହେଁ । କହିଲେ ଆହୁରି ବିଗିଡ଼ିବେ । ତା'କୁ କହିବା ଯେ 'ଗାଡ଼ିକୁ ଜଲ୍‌ଦୀ ଯା ।' ତେବେ ଡେରିରେ ଯିବ ଆଉ କିଛି ନ କହିବ ତେବେ ସମୟରେ ଯିବ । ଆମେ ନଥିବା ତେବେ ମଧ୍ୟ ସବୁ ଚାଲିବ ଏପରି ଅଟେ । ଏହା ତ କେବଳ ନିଜର ଭ୍ରାନ୍ତ ଅହଂକାର ଅଟେ । ଯେଉଁ ଦିନରୁ ପିଲାଙ୍କ ସହିତ ତୁମର ଝିକ-ଝିକ ବନ୍ଦ ହୋଇଯିବ, ସେହିଦିନରୁ ପିଲାମାନେ ସୁଧୁରିବାକୁ ଲାଗିବେ । ତୁମର ଶବ୍ଦ ଭଲ ବାହାରୁ ନାହିଁ, ସେଥିପାଇଁ ସାମ୍ନାବାଲା ଆକୁଳାଏ । ତୁମ ଶବ୍ଦ ସ୍ୱୀକାର ହୁଏ ନାହିଁ ଏବଂ ଓଲଟା ସେ ଶବ୍ଦ ପ୍ରତ୍ୟାର୍ପଣ ହୋଇ ଫେରି ଆସେ ।

ଆମେ ତ ପିଲାଙ୍କୁ ଖାଇବା-ପିଇବା ପ୍ରସ୍ତୁତ କରି ଦେବା ଏବଂ ଆମର କର୍ତ୍ତବ୍ୟ ପାଳନ କରିବା, ଆଉ କିଛି କହିବା ଭଳି ନୁହେଁ । କହିବା ଦ୍ୱାରା ଫାଇଦା ନାହିଁ, ଏପରି ତୁମକୁ ଲାଗୁଛି ? ପିଲାମାନେ ବଡ଼ ହୋଇଗଲେଣି, ସେମାନେ କ'ଣ ପାହାଚରୁ ଖସି ପଡ଼ିବେ ? ତୁମେ ତୁମର ଆତ୍ମଧର୍ମ କାହିଁକି ଭୁଲି ଯାଉଛ ? ଏହି ପିଲାଙ୍କ ସହିତ ତ ରିଲେଟିଭ ଧର୍ମ ଅଟେ । ସେଠାରେ ମୁଣ୍ଡଖରାପ କରିବା ଭଳି ନୁହେଁ, କ୍ଳେଶ କରିବା ଅପେକ୍ଷା ମୌନ ରହିବା ଉତ୍ତମ ହେବ । କ୍ଳେଶ ଦ୍ୱାରା ତ ନିଜର ଏବଂ ସାମ୍ନାବାଲାର ମୁଣ୍ଡ ମଧ୍ୟ ବିଗିଡ଼ି ଯାଏ ।

ସେମାନେ ତୁମକୁ ଖରାପ କୁହନ୍ତି, ତୁମେ ତା'କୁ ଖରାପ କୁହ ! ପୁଣି ବାତାବରଣ ଦୂଷିତ ହୋଇଚାଲେ ଏବଂ ବିସ୍ଫୋଟ ହୁଏ । ଏଣୁ ତୁମେ ତାଙ୍କୁ ଭଲରେ କହିବ । କେଉଁ ଦୃଷ୍ଟିରେ ? ଗୋଟିଏ ଦୃଷ୍ଟି ମନରେ ରଖିନିଅ ଯେ 'ଆଫ୍‌ଟର୍ ଅଲ୍ ହି ଇଜ୍ ଏ ଗୁଡ୍ ମ୍ୟାନ (ଯାହା ବି ହେଉ ସେ ଜଣେ ଭଲ ମଣିଷ) ।'

**ପ୍ରଶ୍ନକର୍ତ୍ତା :** କ୍ଳେଶ ହୁଏ ସେତେବେଳେ ପିଲାଙ୍କ ସହ କିପରି ବ୍ୟବହାର କରିବା ଉଚିତ ?

**ଦାଦାଶ୍ରୀ :** ରାଗ୍-ଦ୍ୱେଷ ନହେବା ଉଚିତ । ସେ କିଛି ବିଗାଡ଼ି ଥିବ, କିଛି କ୍ଷତି କରିଥିବ, ତେବେ ମଧ୍ୟ ତା'ଉପରେ ଦ୍ୱେଷ ନହେବା ଉଚିତ । ତା'କୁ 'ଶୁଦ୍ଧାତ୍ମା' ରୂପରେ ଦେଖିବା ଉଚିତ । ଅର୍ଥାତ ରାଗ୍-ଦ୍ୱେଷ ନହେଲା ମାନେ ସବୁ ନିରାକରଣ ହୋଇଗଲା ଆଉ ଆମ ଜ୍ଞାନ ରାଗ୍-ଦ୍ୱେଷ ହୁଏ ନାହିଁ ଏପରି ଅଟେ ।

ନିଜ ମନରେ ତିଳେ ମାତ୍ର ମଧ୍ୟ ଦ୍ୱିଧା ହୁଏ ତେବେ ତାହା ଅନ୍ୟ କାହାର ନୁହେଁ, ନିଜର ହିଁ ଅଟେ, ଏଣୁ ଆମକୁ ବୁଝିନେବା ଉଚିତ ଯେ ଏ ଦ୍ୱିଧା ମୋର ଅଟେ । ଦ୍ୱିଧା କାହିଁକି ହେଲା ? ଆମକୁ ଦେଖିବା ଆସିଲା ନାହିଁ, ସେଥିପାଇଁ । ଆମକୁ 'ଶୁଦ୍ଧାତ୍ମା' ହିଁ ଦେଖିବାର ଅଛି । ଚିନ୍ତା ଶେଷ କରିବାର ଅଛି । 'ମୁଁ ଶୁଦ୍ଧାତ୍ମା ଅଟେ', ବାକି ସବୁ 'ବ୍ୟବସ୍ଥିତ' ଅଟେ । ଏପରି 'ସଲ୍ୟୁଶନ'(ସମାଧାନ) ମୁଁ ଦେଇଛି ।

ପୁଅର ବାହାଘର ହେବାପରେ ଚିନ୍ତିତ ହେବ ତେବେ ଚଳିବ ନାହିଁ, ତାହା ପୂର୍ବରୁ ଚେତି ଯାଅ । ସାଥିରେ ରଖିବ ତେବେ କ୍ଳେଶ ହେବ । ତା' ଜୀବନ ବିଗିଡ଼ିବ ଏବଂ ସାଥିରେ ଆମର ବି ବିଗିଡ଼ିବ । ଯଦି ପ୍ରେମ ପାଇବାକୁ ଚାହୁଁଛ ତେବେ ତା'ଠାରୁ ଅଲଗା ରହି ପ୍ରେମ ରଖ, ନହେଲେ ଜୀବନ ବିଗାଡ଼ିବ ଏବଂ ଏହାଦ୍ୱାରା ପ୍ରେମ କମିଯିବ । ତା' ପତ୍ନୀ ଆସିଲା ସେତେବେଳେ ସେମାନଙ୍କୁ ସାଥିରେ ରଖିବାକୁ ଚାହିଁବ ତେବେ ସର୍ବଦା ସେ ପତ୍ନୀର କହିବା ମାନିବ, ତୁମର ଶୁଣିବ ନାହିଁ । ତା' ପତ୍ନୀ କହିବ,

'ଆଜି ତ ମାତାଜୀ ଏମିତି କହୁଥିଲେ, ସେମିତି କହୁଥିଲେ ।' ସେତେବେଳେ ପୁଅ କହିବ, 'ହଁ, ମା ଏମିତି ହିଁ ଅଟେ ।' ଆଉ ପୁଣି ଚାଲିଲା ତୋଫାନ । ଦୂରରୁ ସବୁ ଠିକ୍ ରହେ !

**ପ୍ରଶ୍ନକର୍ତ୍ତା :** ପିଲାମାନେ ବିଦେଶରେ ଅଛନ୍ତି ତାଙ୍କ କଥା ମନେ ପଡୁଛି, ତାଙ୍କର ଚିନ୍ତା ହେଉଛି ।

**ଦାଦାଶ୍ରୀ :** ସେ ପିଲାମାନେ ସେଠି ଖାଇ-ପିଇ ମଜା କରୁଥିବେ, ମା'କୁ ମନେ ପକାଉ ବି ନଥିବେ ଆଉ ମା ଏଠି ଚିନ୍ତା କରି ଚାଲୁଛି, ଏ କି କଥା ?

**ପ୍ରଶ୍ନକର୍ତ୍ତା :** ସେ ପୁଅମାନେ ସେଠାରୁ ଲେଖୁଛନ୍ତି ଯେ ତୁମେ ଏଠାକୁ ଆସିଯାଅ ।

**ଦାଦାଶ୍ରୀ :** ହଁ! କିନ୍ତୁ ଯିବା କ'ଣ ଆମ ହାତରେ ଅଛି ? ତାହା ଅପେକ୍ଷା ତୁମେ ନିଜେ ହିଁ ଯେମିତି ଅଛି ସେମିତି ବନ୍ଦୋବସ୍ତ କରିନିଅ । ଏହା କ'ଣ ଭୁଲ ? ସେମାନେ ତାଙ୍କ ଘରେ, ଆମେ ଆମ ଘରେ ! ଏହି କୋଳରୁ ଜନ୍ମ ହେଲା ସେଥିପାଇଁ କ'ଣ ଆମର ହୋଇଗଲେ ସବୁ? ଆମର ହୋଇଥାନ୍ତେ ତେବେ ଆମ ସାଥିରେ ଆସିଥାନ୍ତେ କିନ୍ତୁ କେହି କ'ଣ ଆସେ ଏହି ସଂସାରରେ ?

ଘରେ ପଚାଶ ବ୍ୟକ୍ତି ଥିବେ କିନ୍ତୁ ତୁମକୁ ଚିହ୍ନିବା ଆସିଲା ନାହିଁ ସେଥିପାଇଁ ଗଡ଼ବଡ଼ ହୋଇ ଚାଲିଥାଏ । ସେମାନଙ୍କୁ ଚିହ୍ନିବା ଦରକାର ନା ? ଏହା ଗୋଲାପ ଚାରା ଅଟେ କି କେଉଁ ଚାରା ଅଟେ, କ'ଣ ଏହା ସନ୍ଧାନ କରିବା ଉଚିତ ନୁହେଁ ?

ପୂର୍ବେ କ'ଣ ଥିଲା ? ସତ୍ୟଯୁଗରେ ଗୋଟିଏ ଘରେ ସମସ୍ତେ ଗୋଲାପ ଏବଂ ଅନ୍ୟ ଘରେ ସମସ୍ତେ ମଲ୍ଲୀ, ତୃତୀୟ ଘରେ ଚମ୍ପା ! ଏବେ କ'ଣ ହୋଇଛି ନା ଗୋଟିଏ ଘରେ ମଲ୍ଲୀ ଅଛି, ଗୋଲାପ ଅଛି, ଚମ୍ପା ଅଛି ! ଗୋଲାପ ହେବ ତେବେ କଣ୍ଟା ରହିବ ଆଉ ଯଦି ମଲ୍ଲୀ ଅଛି ତେବେ କଣ୍ଟା ରହିବ ନାହିଁ, ମଲ୍ଲୀ ଫୁଲ ଧଳା ହେବ, ଗୋଲାପ ଗୋଲାପୀ ହେବ, ଲାଲ ହେବ । ଏବେ ଏପରି ଅଲଗା ଅଲଗା ଚାରା ଅଛନ୍ତି । ଏହି କଥା ତୁମକୁ ବୁଝାପଡ଼ିଲା ?

ସତ୍ୟଯୁଗରେ ଯେଉଁ କ୍ଷେତ ଥିଲା, ଆଜି କଳିଯୁଗରେ ସେସବୁ ବଗିଚା ଭଳି ହୋଇଗଲାଣି ! କିନ୍ତୁ ତାଙ୍କୁ ଦେଖିବା ଆସେ ନାହିଁ, ତା'ର କ'ଣ କରିବା ? ସେମାନଙ୍କୁ ସଠିକ୍ ଦେଖିବା ନ ଆସିବ ତେବେ ଦୁଃଖ ହିଁ ହେବ ନା ? ଏହି ଜଗତରେ ଲୋକଙ୍କ ପାଖରେ ଏହା ଦେଖିବାର ଦୃଷ୍ଟି ହିଁ ନାହିଁ । କେହି ବି ଖରାପ ନଥାନ୍ତି । ଏହି ମତଭେଦ

ତ ନିଜ-ନିଜର ଅହଂକାର ଅଟେ । ଦେଖିବା ଆସେ ନାହିଁ ତାହାର ଦୁଃଖ । ଦେଖିବା ଆସେ ତେବେ ଦୁଃଖ ହିଁ ନାହିଁ! ମୋତେ ସାରା ସଂସାରରେ କାହାରି ସହ ମଧ୍ୟ ମତଭେଦ ହୁଏ ନାହିଁ । ମୋତେ ଦେଖିବା ଆସେ ଯେ ଏହା ଗୋଲାପ ଅଟେ ନା ମଲ୍ଲୀ । ତାହା ଦୁଦୁରା ଅଟେ ନା ପିତା ଜହ୍ନି ଫୁଲ ଅଟେ, ଏମିତି ସମସ୍ତଙ୍କୁ ଚିହ୍ନି ନିଏ ।

ପ୍ରକୃତିକୁ ଚିହ୍ନନ୍ତି ହିଁ ନାହିଁ ସେଥିପାଇଁ ମୁଁ ପୁସ୍ତକରେ ଲେଖିଛି, 'ଆଜି ଘର ବଗିଚା ହୋଇଗଲାଣି । ଏଣୁ କାମ କାଢ଼ି ନିଅ ଏହି ସମୟରେ ।' ଯିଏ ନିଜେ 'ନୋବଲ'(ଉଦାର) ହୋଇଥିବ ଆଉ ପୁଅ କଞ୍ଜୁସ ହୋଇଥିବ ତେବେ କହିବ, 'ମୋ ପୁଅ ବିଲ୍‌କୁଲ କଞ୍ଜୁସ ଅଟେ ।' ତା'କୁ ସେ ମାରିପିଟି 'ନୋବଲ' ବନାଇବା ପାଇଁ ଚାହିଁଲେ ମଧ୍ୟ ହୋଇପାରିବ ନାହିଁ । ସେ ମାଲ ହିଁ ଅଲଗା । ଯେବେକି ମାତା-ପିତା ତାଙ୍କୁ ନିଜ ପରି ବନାଇବା ପାଇଁ ଚାହାନ୍ତି । ଆରେ ତା'କୁ ପ୍ରସ୍ଫୁଟିତ ହେବାକୁ ଦିଅ, ତା' ଶକ୍ତି କ'ଣ ଅଛି? ତାହା ବିକଶିତ ହେବାକୁ ଦିଅ । କାହାର ସ୍ୱଭାବ କିପରି, ତାହା ଦେଖିନେବାର ଅଛି । ଆରେ ଭାଇ, କ'ଣ ପାଇଁ ସେମାନଙ୍କ ସହ ଝଗଡ଼ା କରୁଛ ?

ଏହି ବଗିଚାକୁ ଚିହ୍ନିବା ଭଳି ଅଟେ । 'ବଗିଚା' କୁହେ ସେତେବେଳେ ଲୋକେ ବୁଝନ୍ତି ଏବଂ ପୁଣି ନିଜ ପିଲାକୁ ଚିହ୍ନନ୍ତି । ପ୍ରକୃତିକୁ ଚିହ୍ନ ! ଥରେ ପିଲାକୁ ଚିହ୍ନିନିଅ ଏବଂ ସେହି ଅନୁସାରେ ବ୍ୟବହାର କର । ତା'ର ପ୍ରକୃତିକୁ ଦେଖି ବ୍ୟବହାର କରିବା ତେବେ କ'ଣ ହେବ ? ମିତ୍ରର ପ୍ରକୃତିକୁ 'ଏଡ଼ଜଷ୍ଟ' ହେଉଛେ ନା ନାହିଁ ? ଏହିପରି ପ୍ରକୃତିକୁ ଦେଖିବାକୁ ପଡ଼େ, ପ୍ରକୃତିକୁ ଚିହ୍ନିବାକୁ ପଡ଼େ । ଚିହ୍ନିକରି ଚାଲିବା ତେବେ ଘରେ ଝଗଡ଼ା ହେବ ନାହିଁ । ଏଠି ତ ମାରି-ପିଟି 'ମୋ ପରି ହୋ', ଏପରି କୁହନ୍ତି । ସେଭଳି କିପରି ହୋଇ ପାରିବେ ?

ସାରା ସଂସାର ଏଭଳି ବ୍ୟବହାର ଜ୍ଞାନର ସନ୍ଧାନରେ ଅଛି, ଏହା ଧର୍ମ ନୁହେଁ । ଏହି ଜ୍ଞାନ ସଂସାରରେ ରହିବାର ଉପଚାର ଅଟେ । ସଂସାରରେ ଏଡ଼ଜଷ୍ଟ ହେବାର ଉପାୟ ଅଟେ । ସ୍ତ୍ରୀ ସହ କିପରି ଏଡ଼ଜଷ୍ଟମେଣ୍ଟ କରିବା, ପୁଅ ସହ କିପରି ଏଡ଼ଜଷ୍ଟମେଣ୍ଟ କରିବା, ତାହାର ଉପାୟ ଅଟେ ।

ଘରେ ଖିଟ୍‌ପିଟ୍ ହୁଏ, ତେବେ ଏହି ବାଣୀର ଶବ୍ଦ ଏପରି ଯେ ସମସ୍ତଙ୍କ ଅସୁବିଧା ଦୂରେଇ ଯାଏ । ଏହି ବାଣୀ ଦ୍ୱାରା ସବୁ ଭଲ ହୁଏ । ଯାହାଦ୍ୱାରା ଦୁଃଖ ଚାଲିଯାଏ, ଏପରି ବାଣୀ ଲୋକ ଖୋଜନ୍ତି । କାହିଁକିନା କେହି ଏପରି ଉପାୟ ହିଁ ବତାଇ ନାହାନ୍ତି ନା ! ସିଧା କାମରେ ଆସୁଥିବ ଏପରି ଉପାୟ ହିଁ ନାହିଁ ନା !

## (୧୦) ଶଙ୍କାର ପୀଡ଼ା

ଜଣେ ବ୍ୟକ୍ତି ମୋ ପାଖକୁ ଆସୁଥିଲା । ତା'ର ଗୋଟିଏ ଝିଅ ଥିଲା । ତା'କୁ ମୁଁ ପ୍ରଥମରୁ ବୁଝାଇ ଥିଲି ଯେ 'ଏହା ତ କଳିଯୁଗ ଅଟେ, ଏହି କଳିଯୁଗର ପ୍ରଭାବ ତ ଝିଅ ଉପରେ ବି ହୁଏ । ଏଣୁ ସାବଧାନ ରହିବୁ ।' ସେ ବ୍ୟକ୍ତି ବୁଝିଗଲା ଏବଂ ଯେତେବେଳେ ତା' ଝିଅ ଅନ୍ୟସହ ପଳାଇଲା, ସେତେବେଳେ ସେ ବ୍ୟକ୍ତି ମୋତେ ମନେ ପକାଇଲା ଏବଂ ମୋ ପାଖକୁ ଆସି କହିବାକୁ ଲାଗିଲା, 'ଆପଣ କହିଥିଲେ ସେ କଥା ଠିକ୍ ଥିଲା । ଯଦି ଆପଣ ମୋତେ ଏଭଳି କଥା ନ ବତାଇଥାନ୍ତେ ତେବେ ମୋତେ ବିଷ ଖାଇବାକୁ ପଡ଼ିଥାନ୍ତା ।' ଏପରି ଅଟେ ଏହି ଜଗତ, *ପୋଲମ୍‌ପୋଲ୍* (ଫମ୍ପା) ! ଯାହା ହେଉଅଛି ତାହାକୁ ସ୍ୱୀକାର କରିବା ଉଚିତ, ସେଥିପାଇଁ କ'ଣ ବିଷ ଖାଇବା ? ନା, ତେବେ ତ ତୁ ପାଗଳ କୁହାଯିବୁ । ଏ ତ କପଡ଼ା ଢାଙ୍କି ମର୍ଯ୍ୟାଦା ରଖୁଛନ୍ତି ଆଉ କୁହନ୍ତି ଯେ ଆମେ ଖାନ୍‌ଦାନୀ ଅଟୁ !

ଜଣେ ମୋର ଖାସ୍ ସମ୍ବନ୍ଧୀ ଥିଲା, ତା'ର ଚାରି ଝିଅ ଥିଲେ । ସେ ବହୁତ ଜାଗୃତ ଥିଲା, ମୋତେ କୁହେ, 'ଏ ଝିଅମାନେ ବଡ଼ ହୋଇଗଲେ, କଲେଜ ଗଲେ, କିନ୍ତୁ ମୋତେ ଏମାନଙ୍କ ଉପରେ ବିଶ୍ୱାସ ହେଉନାହିଁ ।' ମୁଁ କହିଲି, 'କଲେଜ ସାଥିରେ ଯା ଆଉ ସେମାନେ କଲେଜରୁ ବାହାରନ୍ତି ତେବେ ପଛେ ପଛେ ଆ ।' ଏହିପରି ଥରେ ଯିବୁ କିନ୍ତୁ ଦ୍ୱିତୀୟ ଥର କ'ଣ କରିବୁ ? ସ୍ତ୍ରୀକୁ ପଠେଇବୁ ? ଆରେ, ବିଶ୍ୱାସ କେଉଁଠି ରଖିବା କଥା ଏବଂ କେଉଁଠି ରଖିବା କଥା ନୁହେଁ, ଏତିକି ବି ବୁଝୁନାହୁଁ ? ଆମେ ଝିଅକୁ ଏତିକି କହିଦେବା ଉଚିତ, 'ଦେଖ ଝିଅ, ଆମେ ଭଲ ଘରର ଲୋକ, ଆମେ ଖାନ୍‌ଦାନୀ, କୂଳବାନ ।' ଏହିପରି ତା'କୁ ସାବଧାନ କରିଦେବ । ପରେ ଯାହା ହେଲା ତାହା 'କରେକ୍ଟ', ଶଙ୍କା କରିବାର ନାହିଁ । କେଉଁମାନେ ଶଙ୍କା କରୁଥିବେ ? ଯେଉଁମାନେ ଏହି ମାମଲାରେ ଜାଗୃତ ଅଟନ୍ତି, ସେମାନେ ଶଙ୍କା କରୁଥାନ୍ତି । ଏପରି ସଂଶୟ ରଖିଲେ କେବେ ଅନ୍ତ ଆସିବ ?

ଏଣୁ କୌଣସି ବି ପ୍ରକାରର ଶଙ୍କା ଥିବ ତେବେ ଉତ୍ପନ୍ନ ହେବା ପୂର୍ବରୁ ହିଁ ଉପାଡ଼ି ଫୋପାଡ଼ି ଦେବ । ଏ ତ ଝିଅମାନେ ବାହାରକୁ ବୁଲାବୁଲି କରିବା ପାଇଁ ଯାଆନ୍ତି, ଖେଳିବା ପାଇଁ ଯାଆନ୍ତି, ସେଥିରେ ଶଙ୍କା କରୁଛ ଆଉ ଯେବେ ଶଙ୍କା ଉତ୍ପନ୍ନ ହୁଏ ତେବେ ଆମର ସୁଖ-ଶାନ୍ତି ରହେ ? ନା ।

ଅତଃ କେବେ ଝିଅ ରାତି ଡେରିରେ ଆସେ ତେବେ ମଧ୍ୟ ଶଙ୍କା କରିବ ନାହିଁ । ଶଙ୍କା ବାହାର କରିଦେବ ତେବେ କେତେ ଲାଭ ନ ହେବ ? ବିନା କାରଣରେ

ଡରେଇ ରଖିବାର ଅର୍ଥ କ'ଣ ? ଗୋଟିଏ ଜନ୍ମରେ କିଛି ପରିବର୍ତ୍ତନ ହେବାର ନାହିଁ । ସେ ଝିଅମାନଙ୍କୁ ବିନା କାରଣରେ ଦୁଃଖ ପହଞ୍ଚାଅ ନାହିଁ, ପିଲାଙ୍କୁ ଦୁଃଖ ଦିଅ ନାହିଁ । ବାସ୍ ଏତିକି ନିଶ୍ଚୟ କୁହ ଯେ, 'ଝିଅ ତୁ ବାହାରକୁ ଯାଉଛୁ କିନ୍ତୁ ଡେରି କରିବୁନି, ଆମେ ଖାନ୍‌ଦାନୀ ଲୋକଙ୍କ ଭିତରେ ଯାଉଛେ, ଆମକୁ ଏହା ଶୋଭା ଦିଏ ନାହିଁ, ଏଣୁ ବେଶୀ ଡେରି କରିବୁନି ।' ଏହିପରି ସବୁ କଥା ହେବ, ବୁଝାଇବ । କିନ୍ତୁ ଶଙ୍କା କରିବା ଠିକ୍ ହେବନାହିଁ ଯେ 'କାହା ସହିତ ବୁଲୁଥିବ, କ'ଣ କରୁଥିବ ?' ଆଉ କେବେ ରାତି ବାରଟାରେ ଆସେ ତେବେ ମଧ୍ୟ ପରଦିନ କହିବ ଯେ, 'ଝିଅ, ଏପରି ନହେବା ଉଚିତ ।' ତା'କୁ ଯଦି ଘରୁ ବାହାର କରିଦେବା ତେବେ ସେ କାହା ପାଖକୁ ଯିବ ତାହାର ଠିକଣା ନାହିଁ । ଫାଇଦା କେଉଁଥିରେ ? କମରୁ କମ କ୍ଷତି ହେଉ, ସେଥିରେ ଫାଇଦା ନା ? ଯେତେ କମ କ୍ଷତି ହେବ ତାହା ଲାଭଦାୟକ । ସେଥିପାଇଁ ମୁଁ ସମସ୍ତଙ୍କୁ କହିଛି ଯେ 'ରାତି ଡେରିରେ ଆସନ୍ତି ତେବେ ମଧ୍ୟ ଝିଅମାନଙ୍କୁ ଘରକୁ ଆସିବାକୁ ଦେବ । ତାଙ୍କୁ ବାହାର କରିଦେବ ନାହିଁ ।' ନହେଲେ ଏମାନେ ତ ବାହାରୁ ହିଁ ବାହାର କରିଦେବେ, ଏମିତି ଗରମ ସ୍ୱଭାବର ଲୋକ ଅଟନ୍ତି ! କାଳ କିଭଳି ବିଚିତ୍ର ଅଟେ ! କେତେ ଦୁଃଖଦାୟୀ କାଳ ! ! ଆଉ ଉପରୁ ଏହା କଳିଯୁଗ ଅଟେ, ଏଣୁ ଘରେ ବସାଇ ତା'କୁ ବୁଝାଇବ ।

**ପ୍ରଶ୍ନକର୍ତ୍ତା :** ଏବେ ସାମ୍ନାବାଲା କେହି ଆମ ଉପରେ ସଂଶୟ ରଖେ ତେବେ ତାହାର ନିରାକରଣ ନିଜେ କିପରି କରିବୁ ?

**ଦାଦାଶ୍ରୀ :** ସେ ସଂଶୟ ରଖୁଛି, ଏପରି ଭାବିବ ନାହିଁ, ଏଭଳି ଆମକୁ ଯେଉଁ ଜ୍ଞାନ ଅଛି, ସେ ଜ୍ଞାନ ଭୁଲେଇ ଦିଅ ।

**ପ୍ରଶ୍ନକର୍ତ୍ତା :** ତା'କୁ ଆମ ଉପରେ ସଂଶୟ ହେଲା, ତେବେ ଆମକୁ ପଚାରିବା ଉଚିତ ଯେ କାହିଁକି ସଂଶୟ ହେଲା ?

**ଦାଦାଶ୍ରୀ :** ପଚାରିବାରେ ମଜା ନାହିଁ, ଏମିତି ପଚାରିବ ହିଁ ନାହିଁ । ଆମକୁ ତୁରନ୍ତ ବୁଝିନେବା ଉଚିତ ଯେ ନିଜର କିଛି ଦୋଷ ଅଛି, ନହେଲେ ତା'କୁ ଶଙ୍କା କାହିଁକି ହେଲା ?

'ଯିଏ ଭୋଗେ ତା'ର ଭୁଲ' ଏହି ବାକ୍ୟ ବୁଝିନେଲା ମାନେ ନିରାକରଣ ଆସିଗଲା । ଶଙ୍କା କରିବାବାଲା ଭୋଗୁଛି ନା ପୁଣି ଯାହା ଉପରେ ଶଙ୍କା ହେଉଛି, ସେ ଭୋଗୁଛି ? ଏହା ଦେଖିନେବ ।

## (୧୧) ଉତ୍ତରାଧିକାରରେ ପିଲାଙ୍କୁ କେତେ ?

**ପ୍ରଶ୍ନକର୍ତ୍ତା :** ପୁଣ୍ୟୋଦୟରୁ ଆବଶ୍ୟକତା ଠାରୁ ଅଧିକ ଲକ୍ଷ୍ମୀ ପ୍ରାପ୍ତ ହୁଏ ତେବେ କ'ଣ କରିବା ଉଚିତ ?

**ଦାଦାଶ୍ରୀ :** ତେବେ ଭଲ କାମରେ ଖର୍ଚ୍ଚ କରିଦେବ । ପିଲାଙ୍କ ପାଇଁ ବେଶୀ ରଖିବ ନାହିଁ । ତାଙ୍କୁ ପଢ଼େଇ-ଲେଖେଇ କାମ-ଧନ୍ଦାରେ ଲଗାଇ ଦେବ । କାମରେ ଲାଗିଗଲେ, ପରେ ବେଶୀ ଲକ୍ଷ୍ମୀ ରଖିବ ନାହିଁ । ଏତିକି ଖିଆଲ ରଖିବ ଯେ ଯେତିକି ଆମ ସାଥିରେ ଆସେ ସେତିକି ଆମର ।

**ପ୍ରଶ୍ନକର୍ତ୍ତା :** ଏଠାରୁ ସାଥିରେ ନେଇଯାଇ ପାରିବୁ କି ?

**ଦାଦାଶ୍ରୀ :** ଏବେ କ'ଣ ନେଇକି ଯିବ ? ସାଥିରେ ଯାହା ଥିଲା ତାହା ସବୁ ଏଠାରେ ଖର୍ଚ୍ଚକରି ପୁରା କଲ । ଏବେ ମୋକ୍ଷ ସମ୍ବନ୍ଧୀ କିଛି ଏଠାକୁ ଆସି ମୋ ପାଖରୁ ପାଇବ ତେବେ ଦିନ ବଦଳିବ । ଏବେ ବି ଜୀବନ ବାକି ଅଛି, ଏବେ ବି ଜୀବନ ବଦଳି ପାରିବ, ଯେତେବେଳେ ଉଠିଲେ ସେତେବେଳେ ସକାଳ ।

ସେଠାକୁ (ଆଗ ଜନ୍ମକୁ) ନେଇକି ଯିବାରେ କେଉଁ ଜିନିଷ ଆସେ ? ଏଠି ଯାହା ତୁମେ ଖର୍ଚ୍ଚ କଲ, ସେ ସବୁ ନାଳରେ ଗଲା (ବେକାର ଗଲା), ତୁମ ମୌଜ-ମସ୍ତି ପାଇଁ, ତୁମ ରହିବା ପାଇଁ ଯାହା କିଛି ବି କର ସେସବୁ ନାଳରେ ଗଲା । କେବଳ ଅନ୍ୟମାନଙ୍କ ପାଇଁ ଯାହା କିଛି କଲ ସେତିକି ହିଁ ତୁମର ଓଭରଡ୍ରାଫ୍ଟ (ଜମା) ଅଟେ ।

ଜଣେ ବ୍ୟକ୍ତି ମୋତେ ପ୍ରଶ୍ନକଲା ଯେ ପିଲାମାନଙ୍କୁ କିଛି ଦେବୁ ନାହିଁ ? ମୁଁ କହିଲି, 'ପିଲାଙ୍କୁ ଦେବ, କିନ୍ତୁ ତୁମ ବାପା ତୁମକୁ ଯେତିକି ଦେଇଥିବେ, ସେତିକି ଦେବ । ମଝିରେ ଯାହା କମାଇଲେ, ତାହା ଆମେ ଯେଉଁଠି ଚାହିଁବା, କେଉଁ ଭଲ କାର୍ଯ୍ୟରେ ଖର୍ଚ୍ଚ କରିଦେବା ।'

**ପ୍ରଶ୍ନକର୍ତ୍ତା :** ଆମ ଓକିଲଙ୍କ କାନୁନରେ ବି ଏମିତି ଅଛି ଯେ ବାପ-ଗୋସାଙ୍କ ପ୍ରପର୍ଟୀ(ସମ୍ପତ୍ତି) ଯାହା ଥିବ, ତାହା ପିଲାଙ୍କୁ ଦେବା ହିଁ ଉଚିତ ଆଉ ଯାହା ସ୍ୱ-ଉପାର୍ଜନ ଧନ ଅଛି, ତାହାର ବାପ ଯାହା ଚାହିଁବ କରିପାରେ ।

**ଦାଦାଶ୍ରୀ :** ହଁ, ଯାହା କରିବାକୁ ଚାହେଁ କରିପାରେ । ନିଜ ହାତରେ ହିଁ କରିନେବା ଉଚିତ । ଆମ ମାର୍ଗ କ'ଣ କୁହେ ଯେ ଯଦି ତୋ ନିଜ ମାଲ ହୋଇଥିବ, ତାହା ଅଲଗା ଖର୍ଚ୍ଚ କର, ତେବେ ତାହା ତୋ ସାଥିରେ ଆସିବ । କାହିଁକିନା ଏ 'ଜ୍ଞାନ' ପ୍ରାପ୍ତ କରିବା ପରେ ଏବେ ଏକ-ଦୁଇ ଜନ୍ମ ବାକି ରହିଛି, ଏଣୁ ସାଥିରେ ଦରକାର

ପଡ଼ିବ ନା ? ଅନ୍ୟ ଗାଁ ଯାଆନ୍ତି ସେତେବେଳେ ସାଥିରେ ଅଳ୍ପ ରୁଟି ନେଇ ଯାଆନ୍ତି । ତେବେ ଏଠି ବି ସାଥିରେ କିଛି ଥିବା ଦରକାର ନା ?

ଏଣୁ ପୁଅକୁ ତ କେବଳ କ'ଣ ଦେବା ଉଚିତ, ଗୋଟିଏ 'ଫ୍ଲାଟ' (ଘର) ଦେବ, ଯେଉଁଠି ଆମେ ରହୁଛେ । ତାହା ମଧ୍ୟ ଯଦି ଥିବ ତେବେ ଦେବ । ତା'କୁ କହିଦେବ ଯେ, 'ପୁଅ, ଆମେ ନରହିବୁ ସେ ଦିନ ଏସବୁ ତୋର, ସେପର୍ଯ୍ୟନ୍ତ ମାଲିକାନା ଆମର ! ପାଗଳାମି କରିବୁ ତେବେ ତୋ ସ୍ତ୍ରୀ ସହ ତୋତେ ବାହାର କରିଦେବି । ଆମେ ଅଛୁ ସେପର୍ଯ୍ୟନ୍ତ ତୋର କିଛି ବି ନୁହଁ । ଆମର ଯିବା ପରେ ସବୁକିଛି ତୋର ।' ୱିଲ୍ (ଇଚ୍ଛାପତ୍ର) କରିଦେବ । ଯେତିକି ତୁମ ବାପା ଦେଇଥିବେ ସେତିକି ତୁମକୁ ତା'କୁ ଦେବାର ଅଛି । ସେ ସେତିକିର ହକଦାର ଅଟେ । ଶେଷ ପର୍ଯ୍ୟନ୍ତ ପୁଅ ମନରେ ଏପରି ରହେ ଯେ 'ଏବେ ବାପାଙ୍କ ପାଖରେ ପଚାଶ ହଜାର ଆହୁରି ଅଛି ।' ତୁମ ପାଖରେ ତ ଲକ୍ଷେ ଥିବ । ସେ ମନରେ ଭାବେ ଯେ ୪୦-୫୦ ହଜାର ଦେବେ । ତା'କୁ ଶେଷ ପର୍ଯ୍ୟନ୍ତ ଏହି ଲାଳସାରେ ରଖିବ । ସେ ନିଜ ପତ୍ନୀକୁ କୁହେ ଯେ, 'ଯା, ବାପାଙ୍କୁ ଫାଷ୍ଟ କ୍ଲାସ ଖାଇବାକୁ ଦେ, ଚା-ଜଳଖିଆ ଆଣ ।' ତୁମେ ଆଡ଼ମ୍ବରରେ ରହିବ । ଅର୍ଥାତ ତୁମ ବାପା ଯାହା କିଛି କୋଠରୀ (ଘର) ଦେଇଥିବେ ତାହା ତାଙ୍କୁ ଦେଇଦିଅ ।

କେହି କିଛି ସାଥିରେ ନେଇ ଯିବାକୁ ଦିଅନ୍ତି ନାହିଁ । ଆମ ଯିବା ପରେ ଆମ ଶରୀରକୁ ଜଳେଇ ଦିଅନ୍ତି । ତେବେ ପୁଣି ପିଲାଙ୍କ ପାଇଁ ଅଧିକ ଛାଡ଼ି କ'ଣ କରିବା ? ପିଲାଙ୍କ ପାଇଁ ବେଶୀ ଛାଡ଼ିଯିବା ତେବେ ପିଲାମାନେ କ'ଣ କରିବେ ? ସେମାନେ ଭାବିବେ ଯେ 'ଏବେ ଚାକିରୀ ବ୍ୟାପାର କରିବାର ଆବଶ୍ୟକତା ନାହିଁ ।' ପିଲାମାନେ ମଦୁଆ ହୋଇଯିବେ । କାହିଁକିନା ପୁଣି ତାଙ୍କୁ ସଙ୍ଗତ ଏପରି ମିଳିଯାଏ । ଏମାନେ ମଦୁଆ ହିଁ ହୋଇଛନ୍ତି ନା ସବୁ ! ଅତଃ ପୁଅକୁ ତ ଆମେ ବୁଝି-ବିଚାରି ନିୟମାନୁସାରେ ଦେବା ଉଚିତ । ଯଦି ଅଧିକ ଦେବା ତେବେ ଦୂରୁପଯୋଗ ହେବ । ସର୍ବଦା ଜବ୍(କାମ) କରୁଥିବ ଏପରି କରିଦେବା ଉଚିତ । ବେକାର ବସିବ ତେବେ ମଦ ପିଇବ ନା ?

କେଉଁ ବିଜ୍‌ନେସ (ଧନ୍ଦା) ତା'କୁ ପସନ୍ଦ ଥିବ ତେବେ କରାଇ ଦେବ । କେଉଁ ବ୍ୟବସାୟ ପସନ୍ଦ ତାହା ପଚାରି, ତା'କୁ ଯେଉଁ ବ୍ୟବସାୟ ଠିକ ଲାଗେ ତାହା କରାଇ ଦେବ । ପଚିଶ-ତିରିଶ ହଜାର ବ୍ୟାଙ୍କରୁ ଲୋନ୍‌ରେ ଆଣିଦେବ, ଯାହା ଫଳରେ ନିଜକୁ ନିଜେ ଭରି ଚାଲିବ ଆଉ ଅଳ୍ପ ବହୁତ ନିଜ ପାଖରୁ ଦେଇଦେବ । ତା'କୁ ଯେତିକି ଦରକାର ଥିବ ସେଥିରୁ ଅଧା ରକମ ଆମକୁ ଦେବାର ଅଛି ଆଉ ଅଧା ରକମ

ବ୍ୟାଙ୍କରୁ ଲୋନ୍‌ରେ ଆଣିଦେବ । ଏହି ଲୋନ୍‌ର କିସ୍ତି ତୁ ଭରିବୁ, ଏପରି କହିଦେବ । କିସ୍ତି ଭରେ ଏବଂ ସେ ପୁଅ ପୁଣି ସମଝଦାର ହୁଏ ।

ଅତଃ ପୁଅକୁ ନିୟମ ଅନୁଯାୟୀ ଯେତିକି ଦେବା ଉଚିତ ସେତିକି ଦେଇ, ବାକି ସବୁ ଲୋକଙ୍କ ସୁଖପାଇଁ ଭଲ ରାସ୍ତାରେ ଖର୍ଚ୍ଚ କରିଦେବ । ଲୋକଙ୍କୁ ସୁଖ କିପରି ମିଳିବ? ତାଙ୍କ ହୃଦୟକୁ ଶାନ୍ତି ପହଞ୍ଚିବ, ତେବେ! ତେବେଯାଇ ସେ ସମ୍ପତ୍ତି ତୁମ ସାଥିରେ ଆସିବ । ଏମିତି ନଗଦ ଆସେ ନାହିଁ କିନ୍ତୁ ଓଭରଡ୍ରାଫ୍ଟ (ଜମାରାଶି) ରୂପରେ ଆସେ । ନଗଦ ତ ନେଇଯିବାକୁ ଦିଅନ୍ତି ହିଁ ନାହିଁ ନା! ଏଠାରେ ଏହିପରି ଓଭରଡ୍ରାଫ୍ଟ କର, ଲୋକଙ୍କୁ ଖୁଆଇ ଦିଅ, ସମସ୍ତଙ୍କ ହୃଦୟକୁ ଶାନ୍ତି ପହଞ୍ଚାଅ । କାହାର ଅସୁବିଧା ଦୂର କର । ଏହା ହେଉଛି ରାସ୍ତା ଆଗକୁ ଡ୍ରାଫ୍ଟ ପଠାଇବାର । ଟଙ୍କାର ସଦୁପଯୋଗ କର । ଚିନ୍ତା କର ନାହିଁ । ଖାଅ-ପିଅ, ଖାଇବା-ପିଇବାରେ କଞ୍ଜୁସି କରନାହିଁ । ଏଥିପାଇଁ କୁହେ ଯେ 'ଖର୍ଚ୍ଚ କରି ପକାଅ ଏବଂ ଓଭରଡ୍ରାଫ୍ଟ ନିଅ ।'

ମୁଁ ତାଙ୍କ ପୁଅମାନଙ୍କୁ କହିଲି ଯେ ତୁମ ବାପା ଏସବୁ ସମ୍ପତ୍ତି ତୁମ ମାନଙ୍କ ପାଇଁ ଏକାଠି କରିଛି, ଧୋତି ପିନ୍ଧି (କଞ୍ଜୁସି କରି) । ତେବେ କହିଲେ, 'ତୁମେ ଆମ ବାପାକୁ ଜାଣି ହିଁ ନାହଁ ।' ମୁଁ ପଚାରିଲି, 'କେମିତି ?' ତେବେ କହିଲେ, 'ଯଦି ଏଠାରୁ ପଇସା ନେଇ ଯାଇ ପାରୁଥାନ୍ତେ ନା, ତେବେ ମୋ ବାପା ତ ଏଠି ଲୋକଙ୍କଠାରୁ କରଜ କରି ଦଶଲକ୍ଷ ନେଇଯିବ ଏମିତି ପକ୍କା ଅଟେ । ଏଣୁ ଏହି କଥା ମନରେ ରଖିବା ଭଳି ନୁହେଁ ।' ସେ ପୁଅ ହିଁ ମୋତେ ଏପରି ବୁଝାଇଲା ଏବଂ ମୁଁ କହିଲି, 'ଏବେ ମୋତେ ପ୍ରକୃତ କଥା ମାଲୁମ ହେଲା! ମୁଁ ଯାହା ଜାଣିବାକୁ ଚାହୁଁଥିଲି, ତାହା ମୋତେ ମିଳିଗଲା ।'

ଗୋଟିକିଆ ପୁଅ ହୋଇଥିବ, ତା'କୁ ଉତ୍ତରାଧିକାରୀ କରି ସବୁ ଦେଇଦେଲା । କୁହନ୍ତି ଯେ 'ପୁଅ, ଏସବୁ ତୋର, ଏବେ ଆମେ ଦୁହେଁ ଧର୍ମଧ୍ୟାନ କରିବୁ ।' 'ଏବେ ଏ ସାରା ସମ୍ପତ୍ତି ତା'ର ହିଁ ତ ଅଟେ', ଏପରି କହିବ ତେବେ ଦୁର୍ଦ୍ଦଶା ହେବ । କାହିଁକିନା ତା'କୁ ସବୁ ସମ୍ପତ୍ତି ଦେଇ ଦେଲ ତେବେ କ'ଣ ହେବ ? ବାପ ସାରା ସମ୍ପତ୍ତି ଏକମାତ୍ର ପୁଅକୁ ଦେଇ ଦିଏ ତେବେ ପୁଅ ମାତା-ପିତାଙ୍କୁ କିଛି ଦିନ ତ ସାଥିରେ ରଖିବ କିନ୍ତୁ ଦିନେ ପୁଅ କହିବ, 'ତୁମର ଅକଲ ନାହିଁ, ତୁମେ ଗୋଟିଏ ଜାଗାରେ ବସିରୁହ, ଏଠି ।' ଏବେ ବାପ ମନରେ ଏପରି ହୁଏ ଯେ ମୁଁ ୟା ହାତରେ ଲଗାମ କାହିଁକି ଦେଲି ?! ଏପରି ପଶ୍ଚାତାପ ହେବ, ତାହା ଅପେକ୍ଷା ଆମକୁ ଲଗାମ ନିଜ ପାଖରେ ହିଁ ରଖିବା ଉଚିତ ।

ଜଣେ ବାପ ନିଜ ପୁଅକୁ କହିଲା ଯେ, 'ସବୁ ସମ୍ପତ୍ତି ତୋତେ ଦେବି ।' ସେତେବେଳେ ସେ କହିଲା ଯେ, ତୁମ ସମ୍ପତ୍ତିରେ ମୁଁ ଆଶା ରଖିନାହିଁ । ତାହାକୁ ତୁମେ ଯେଉଁଠି ଇଚ୍ଛା ଉପଯୋଗ କର । ଶେଷରେ ପ୍ରକୃତି ଯାହା ପରିଣାମ ଦେବ ତାହା ଅଲଗା କଥା । କିନ୍ତୁ ତା'ର ଏପରି *ନିଶ୍ଚୟ*, ନିଜ ଅଭିପ୍ରାୟ ଦେଇ ଦେଲା ନା! ଏଣୁ ହୋଇଗଲା ସାର୍ଟିଫାଏଡ଼ ଏବଂ ଏବେ ମୌଜ-ସଉକ କିଛି ରହିଲା ନାହିଁ ।

## (୧୨) ମୋହର ମାଡ଼ରେ ମଲେ ଅନେକ ଥର

**ପ୍ରଶ୍ନକର୍ତ୍ତା :** ପିଲାମାନେ ବଡ଼ ହେବେ, ପରେ ନିଜର ରହିବେ କି ନାହିଁ କାହାକୁ ଜଣା ?

**ଦାଦାଶ୍ରୀ :** ହଁ, ନିଜର କିଛି ରହେ ନାହିଁ । ଏହି ଶରୀର ମଧ୍ୟ ନିଜର ରହେ ନାହିଁ ତେବେ! ଏହି ଶରୀର ମଧ୍ୟ ପରେ ଆମଠାରୁ ନେଇଯାନ୍ତି । କାରଣ ପର ଜିନିଷ ଆମ ପାଖରେ କେତେ ଦିନ ରହିବ ?

ଛୋଟ ପିଲା ମୋହବଶତଃ 'ପାପା, ପାପା' କୁହେ, ତେବେ ପାପାଜୀ ବହୁତ ଖୁସି ହୋଇଯାଏ ଆଉ 'ମମ୍ମୀ, ମମ୍ମୀ' କୁହେ ତେବେ ମମ୍ମୀ ବି ବହୁତ ଖୁସି ହୋଇ ଆକାଶରେ ଉଡ଼ିବାକୁ ଲାଗେ । ପାପାଜୀଙ୍କ ନିଶଟାଣେ ତଥାପି ପାପା କିଛି କୁହନ୍ତି ନାହିଁ । ଏ ଛୋଟ ପିଲାମାନେ ତ ବହୁତ କାମ କରନ୍ତି । ଯଦି ପାପା-ମମ୍ମୀଙ୍କ ଭିତରେ ଝଗଡ଼ା ହୋଇଥିବ, ତେବେ ସେ ପିଲା ହିଁ ମଧ୍ୟସ୍ଥି ରୂପରେ ସମାଧାନ କରେ । ଝଗଡ଼ା ତ ସବୁବେଳେ ହେଉଥାଏ ନା! ପତି-ପତ୍ନୀଙ୍କ ମଧ୍ୟରେ ସେମିତିରେ ବି 'ତୁ-ତୁ, ମେ-ମେ' ହୋଇଚାଲିଥାଏ, ସେତେବେଳେ ପୁଅ କିଭଳି ସମାଧାନ କରେ ? ସକାଳେ ସେ ଚା' ପିଉ ନଥିବେ, ଟିକିଏ ରୁଷିଥିବେ, ତେବେ ସେ ସ୍ତ୍ରୀ ପିଲାକୁ କ'ଣ କହିବ ନା, ପୁଅ, ଯା, ପାପାଜୀଙ୍କୁ କହ, 'ମୋ ମମ୍ମୀ ଚାହା ପିଇବା ପାଇଁ ଡାକୁଛି, ପାପାଜୀ ଚାଲନ୍ତୁ ।' ଏବେ ପୁଅ ପାପାଜୀଙ୍କ ପାଖକୁ ଯାଇ କହିଲା, 'ପାପାଜୀ, ପାପାଜୀ' ଏବଂ ଏତିକି ଶୁଣୁ ଶୁଣୁ ସବୁକିଛି ଭୁଲି ତୁରନ୍ତ ଚାହା ପିଇବା ପାଇଁ ଆସେ । ଏହିପରି ସବୁ ଚାଲେ । ପୁଅ 'ପାପାଜୀ' କହିଲା କି ଓହୋ! କେ ଜାଣି କି ମନ୍ତ୍ର ଫୁଙ୍କିଲା । ଆରେ, ଏବେ ତ କହୁଥିଲୁ ଯେ ମୋତେ ଚାହା ପିଇବାର ନାହିଁ! ଏପରି ଅଟେ ଏହି ଜଗତ !

ଏହି ଦୁନିଆରେ କେହି କାହାର ପୁଅ ନୁହେଁ । ପୁରା ଦୁନିଆରେ ଏମିତି ପୁଅ ଖୋଜି ଆଣ ଯେ ଯିଏ ବାପ ସହ ତିନି ଘଣ୍ଟା ଝଗଡ଼ା କରିଥିବ ଏବଂ ପରେ କୁହେ ଯେ, 'ହେ ପୂଜ୍ୟ ପିତାଶ୍ରୀ, ଆପଣ ପଛେ ଯେତେ ବି ଗାଳି କରନ୍ତୁ ତଥାପି ଆପଣ ଆଉ ମୁଁ

ଏକ ।' ଏପରି କହିବାବାଲା ଖୋଜି ଆଣିବ ? ଏ ତ ଅଧାଘଣ୍ଟା 'ଟେଷ୍ଟ'ରେ ନେଇଥିବ ତେବେ ଫୁଟିଯାଏ । ବନ୍ଧୁକର ଟିକ୍‌ଡ଼ିକ୍ ଫୁଟିବାରେ ଡେରି ହୁଏ, କିନ୍ତୁ ଏ ତ ତୁରନ୍ତ ଫୁଟିଯାଏ । ଟିକିଏ ଗାଳି କରିବା ଆରମ୍ଭ କଲେ ତା' ପୂର୍ବରୁ ହିଁ ଫୁଟିଯାଏ ନା ଫୁଟେ ନାହିଁ ?

ପୁଅ 'ପାପାଜୀ, ପାପାଜୀ' କରେ ତେବେ ପିତା ଲାଗିବା ଉଚିତ । ଯଦି ମିଠା ଲାଗେ ତେବେ ସେ ସୁଖ ଉଧାରରେ ନେଲ ଏପରି କୁହାଯିବ । ପୁଣି ତାହା ଦୁଃଖ ରୂପରେ ଫେରାଇବାକୁ ପଡ଼ିବ । ପୁଅ ବଡ଼ ହେବ, ସେତେବେଳେ ତୁମକୁ କହିବ ଯେ, 'ତୁମର ଅକଲ ହିଁ ନାହିଁ ।' ସେତେବେଳେ ଆମକୁ ଲାଗେ ଯେ ଏପରି କାହିଁକି ? ତୁମେ ଯେଉଁ ଉଧାର ନେଇଥିଲ ତାହା ଅସୁଲ କରୁଛି । ଏଣୁ ପ୍ରଥମରୁ ସାବଧାନ ହୋଇଯାଅ । ମୁଁ ତ ଉଧାରିର ସୁଖ ନେବାର ବ୍ୟବହାର ହିଁ ଛାଡ଼ି ଦେଇଥିଲି । ଅହୋ ! ନିଜ ଆତ୍ମାରେ ଅନନ୍ତ ସୁଖ ଅଛି ! ତା'କୁ ଛାଡ଼ି ଏ ଭୟାନକ ଅଳିଆରେ କାହିଁକି ପଡ଼ିବା ?

ଜଣେ ସତୁରୀ ବର୍ଷର ବୁଢ଼ୀ ଥିଲା । ଦିନେ ଘରୁ ବାହାରକୁ ଆସି ଚିତ୍କାର କଲା, 'ନିଆଁ ଲାଗୁ ଏ ସଂସାରରେ, ପିତା ବିଷ ଭଳି ଲାଗୁଛି, ମୋତେ ତ ଏ ସଂସାର ଆଦୌ ଭଲ ଲାଗୁନାହିଁ । ହେ ଭଗବାନ ! ତୁ ମୋତେ ଉଠେଇ ନେ ।' ସେତେବେଳେ କେହି ଜଣେ ପିଲା ସେହି ରାସ୍ତାରେ ଯାଉଥିଲା ସେ କହିଲା, 'କାହିଁକି ଜେଜୀ ସବୁଦିନ ତ ବହୁତ ଭଲ କହୁଥିଲୁ । ସବୁଦିନ ତ ମିଠା ଅଙ୍ଗୁର ପରି ଲାଗୁଥିଲା ଆଉ ଆଜି ପିତା କେମିତି ହୋଇଗଲା ?' ତେବେ କହିବାକୁ ଲାଗିଲା, 'ମୋ ପୁତ୍ର ମୋ ସହ କଳହ କରୁଛି । ଏହି ବୃଦ୍ଧାବସ୍ଥାରେ ମୋତେ କହୁଛି, ଚାଲି ଯା ଏଠାରୁ ।'

ଆଗକାଳରେ ଉପକାରୀ ଖୋଜିବା ପାଇଁ ବାହାରକୁ ଯିବାକୁ ପଡୁଥିଲା ଆଉ ଆଜି ତ ଉପକାରୀ ଘରେ ବସି ଜନ୍ମ ହୋଇଛନ୍ତି । ସେଥିପାଇଁ ପୁଅ ଯେଉଁ ସୁଖ-ଦୁଃଖ ଦିଏ, ତାହାକୁ ଶାନ୍ତିରେ ସ୍ୱୀକାର କରିନେବ ।

ଭଗବାନ ମହାବୀରଙ୍କୁ ମଧ୍ୟ ଉପକାରୀ ମିଳୁ ନଥିଲେ । ଆର୍ଯ୍ୟ ଦେଶରେ ଉପକାରୀ ମିଳିଲେ ନାହିଁ ତେଣୁ ତାଙ୍କୁ ପୁଣି ଷାଠିଏ ମାଇଲ ଦୂର ଅନାର୍ଯ୍ୟ ଦେଶରେ ବିଚରଣ କରିବାକୁ ପଡ଼ିଲା, ଯେବେକି ଆମକୁ ତ ଘରେ ବସି ଉପକାରୀ ମିଳିଛନ୍ତି । ପୁଅ କହେ, 'ମୋର ଡେରି ହୋଇଯିବ ତେବେ ତୁମେ ଝିକ୍-ଝିକ୍ କରିବ ନାହିଁ । ତୁମକୁ ଶୋଇବାର ଥିବ ତେବେ ଶୋଇଯାଅ ଚୁପଚାପ ।' ବାପ ବିଚାର କରେ, 'ଏବେ ଶୋଇଯିବି ଚୁପ ଚାପ । ଏସବୁ ମୁଁ ଜାଣି ନଥିଲି, ନହେଲେ ସଂସାର ଆରମ୍ଭ

ହିଁ କରି ନଥାନ୍ତି ।' ଏବେ ଯାହା ହେଲା, ହେଲା । ଆମକୁ ପ୍ରଥମେ ଏପରି ମାଲୁମ ନଥାଏ ନା, ସେଥିପାଇଁ ଆରମ୍ଭ କରି ଦିଅନ୍ତି ଏବଂ ପରେ ଫଶିଯାନ୍ତି !

**ପ୍ରଶ୍ନକର୍ତ୍ତା :** ନାପସନ୍ଦ ମିଳେ ତେବେ ତା'କୁ ଆତ୍ମା ହେତୁ ଉପଯୋଗରେ ନେବ, ଏପରି ଅର୍ଥ ହେଲା ?

**ଦାଦାଶ୍ରୀ :** ନାପସନ୍ଦ ମିଳେ ତାହା ଆତ୍ମା ପାଇଁ ହିତକାରୀ ହିଁ ହୋଇଥାଏ ତାହା ଆତ୍ମାର ଭିଟାମିନ ହିଁ ଅଟେ । ଚାପ(ଦୁଃଖ) ପଡ଼ିଲା ମାନେ ତୁରନ୍ତ ଆତ୍ମାରେ ଆସିଯାନ୍ତି ନା ? ଏବେ କେହି ଗାଳି ଦିଏ ସେହି ଘଡ଼ି ତୁମେ ସଂସାରରେ ରୁହ ନାହିଁ ଏବଂ ନିଜର ଆତ୍ମାରେ ହିଁ ଏକାକାର ହୋଇଯାଅ କିନ୍ତୁ ଯାହାକୁ ଆତ୍ମାର ଜ୍ଞାନ ହୋଇଛି ସେ ହିଁ ଏପରି କରିପାରିବ ।

**ପ୍ରଶ୍ନକର୍ତ୍ତା :** ବୃଦ୍ଧାବସ୍ଥାରେ ଆମର ସେବା କିଏ କରିବ ?

**ଦାଦାଶ୍ରୀ :** ସେବାର ଆଶା କାହିଁକି ରଖିବା ? ହଇରାଣ ନକରିବେ ତେବେ ମଧ୍ୟ ବହୁତ । ସେବାର ଆଶା ରଖିବ ନାହିଁ । କଦାଚିତ ପାଞ୍ଚ ପ୍ରତିଶତ ଭଲ ମିଳିଯିବେ, ବାକି ପଞ୍ଚାନବେ ପ୍ରତିଶତ ତ ଫେଣ ବାହାର କରିଦେବେ, ଏପରି ଅଟନ୍ତି ।

ଆରେ ! ପୁଅମାନେ ତ କ'ଣ କରନ୍ତି? ଜଣେ ପୁଅ ତା' ବାପାକୁ କହିଲା ଯେ 'ତୁମେ ମୋତେ ମୋ ଭାଗ ଦେଇ ଦିଅ, ସବୁଦିନ ଖିଟପିଟ କରୁଛ, ଏମିତି ଚଳିବ ନାହିଁ ।' ସେତେବେଳେ ତା ବାପ କହିଲା, 'ତୁ ମୋତେ ଏତେ ହଇରାଣ କରିଛୁ ଯେ ମୁଁ ତୋତେ କିଛି ବି ଭାଗ ଦେବି ନାହିଁ ।'

'ଏହା ମୋ ନିଜ ରୋଜଗାର, ଏଣୁ ମୁଁ ତୋତେ ଏହି ସମ୍ପତ୍ତିରୁ କିଛି ଦେବି ନାହିଁ ।' ସେତେବେଳେ ପୁଅ କହିଲା, 'ଏ ସବୁ ମୋ ଜେଜେଙ୍କର ଅଟେ, ମୁଁ କୋର୍ଟରେ ଦାବି କରିବି ।' ମୁଁ କୋର୍ଟରେ ଲଢ଼ିବି କିନ୍ତୁ ଛାଡ଼ିବି ନାହିଁ । ଅର୍ଥାତ ବାସ୍ତବରେ ଏ ସନ୍ତାନମାନେ ଆମର ନୁହନ୍ତି ।

ଯଦି ବାପ ପୁଅ ସହ ଏକ ଘଣ୍ଟା ଲଢ଼େ, ଏତେ ବଡ଼-ବଡ଼ ଗାଳି ଦିଏ, ସେତେବେଳେ ପୁଅ କ'ଣ କୁହେ ? 'ତୁମେ କ'ଣ ଭାବିଛ ?' ପାରିବାରିକ ସମ୍ପତ୍ତି ପାଇଁ ଅଦାଲତରେ ଦାବି ମଧ୍ୟ କରନ୍ତି । ପୁଣି ସେ ପୁଅ ପାଇଁ ଚିନ୍ତା ହେବ କି ? ମମତା ଛୁଟିଗଲା ମାନେ ଚିନ୍ତା ଛୁଟିଗଲା । ଏବେ ମୋତେ ସେ ପୁଅ ଦରକାର ନାହିଁ । ଚିନ୍ତା ହୁଏ ନା, ତାହା ମମତାବାଲାଙ୍କୁ ହୁଏ ।

ତା ସତ୍ତୁ ବେମାର ଥିବ ନା , ତେବେ ବାର ଥର ହସ୍ପିଟାଲ ଦେଖିବାକୁ ଯାଏ ଆଉ ବାପ ହୋଇଥିବ ତେବେ କେବଳ ତିନିଥର ଭେଟିବାକୁ ଯାଏ । ଆରେ, ଏହା ତୁ

କେଉଁ ଆଧାରରେ କରୁଛୁ ? ! ଘରେ ସ୍ତ୍ରୀ ଚାବି ମୋଡ଼େ, ଯେ 'ମୋ ଭିଣୋଇଙ୍କୁ ଦେଖାକରି ଆସିବ !' ଅତଃ ସ୍ତ୍ରୀ କହିଲା ମାନେ ତୁରନ୍ତ ପ୍ରସ୍ତୁତ ! ଏହିପରି ସ୍ତ୍ରୀର ଅଧୀନ ଅଟେ ଜଗତ ।

ସେମିତି ତ ପୁଅମାନେ ଭଲ ଅଟନ୍ତି, କିନ୍ତୁ ଯଦି ତା'କୁ ଗୁରୁ (ପତ୍ନୀ) ମିଳିବାକୁ ନଥିବ ତେବେ । କିନ୍ତୁ ଗୁରୁ ନମିଳି ରହେ ନାହିଁ ନା ! ମୁଁ କ'ଣ କହିବାକୁ ଚାହୁଁଛି ଯେ ପୁଣି ପଛେ ଗୁରୁ ପରଦେଶୀ ହେଉ ବା ଇଣ୍ଡିୟନ ହେଉ, କାବୁ ଆମ ହାତରେ ରହେ ନାହିଁ । ଏଣୁ ଲଗାମ ପଦ୍ଧତିନୁସାରେ ନିଜ ହାତରେ ରଖିବା ଉଚିତ ।

**ପ୍ରଶ୍ନକର୍ତ୍ତା :** ପୂର୍ବ ଜନ୍ମରେ କାହାସହ ବୈର ବନ୍ଧା ହୋଇଥିବ, ତେବେ ତାହା କୌଣସି ନା କୌଣସି ଜନ୍ମରେ ତା'ସହ ଭେଟ ହୋଇ ସୁଝିବାକୁ ପଡ଼େ ନା ?

**ଦାଦାଶ୍ରୀ :** ନା, ଏପରି ନୁହେଁ । ପ୍ରତିଶୋଧ ଏପରି ସୁଝାଯାଏ ନାହିଁ । ବୈର ବାନ୍ଧିହେଲେ ଭିତରେ ରାଗ୍-ଦ୍ୱେଷ ହୁଏ । ପୂର୍ବ ଜନ୍ମରେ ଯଦି ପୁଅସହ ବୈର ହୋଇ ଯାଇଥିବ ତେବେ ଆମେ ବିଚାର କରିବା ଯେ କେଉଁ ଜନ୍ମରେ ପୁରା ହେବ ? ଏହିପରି ପୁଣି କେବେ ଏକାଠି ହେବୁ ? ସେ ପୁଅ ତ ଏହି ଜନ୍ମରେ ବିରାଡ଼ି ହୋଇ ଆସେ । ତୁମେ ତା'କୁ କ୍ଷୀର ଦିଅ, ତଥାପି ସେ ତୁମ ମୁହଁରେ ନଖ ମାରେ (ରାମ୍ପୁଡ଼ି ଦିଏ) ! ଏପରି ଅଟେ ଏସବୁ ! ଏହିପରି ତୁମ ବୈର ସୁଝି ହୋଇଚାଲେ । ପରିପକ୍ୱ ହେବା କାଳର ନିୟମ ଅଟେ ଏଣୁ ଅଳ୍ପ ସମୟ ଭିତରେ ହିସାବ ପୁରା ହୋଇଯାଏ । କିଛି ତ ବୈରଭାବରୁ ମିଳନ୍ତି, ଏପରି ପୁଅ ଯଦି ମିଳେ ତେବେ ବୈରଭାବରୁ ଆମ ତେଲ ବାହାର କରିଦିଏ । ବୁଝା ପଡ଼ିଲା ? ଶତ୍ରୁ-ଭାବରେ ଆସିଲେ ଏପରି ହେବ ନା ନାହିଁ ?

**ପ୍ରଶ୍ନକର୍ତ୍ତା :** ମୋର ତିନି ଝିଅ ଅଛନ୍ତି, ତାଙ୍କ ଭବିଷ୍ୟକୁ ନେଇ ମୋତେ ଚିନ୍ତା ରହୁଛି ।

**ଦାଦାଶ୍ରୀ :** ଆମେ ଭବିଷ୍ୟ ବିଷୟରେ ବିଚାର କରିବା ତାହାଠୁ ଭଲ ଆଜିର ସେଫ୍‌ସାଇଡ଼ କରିବା, ପ୍ରତିଦିନ ସେଫ୍‌ସାଇଡ଼ କରିବା ଭଲ । ଆଗର ଯେଉଁ ବିଚାର କରୁଛ ନା, ସେ ବିଚାର କୌଣସି ବି ପ୍ରକାରେ 'ହେଲ୍ପିଙ୍ଗ୍'(ସହାୟକ) ନୁହେଁ, ଓଲଟା କ୍ଷତିକାରକ ଅଟେ । ତାହା ଅପେକ୍ଷା ଆମେ ପ୍ରତିଦିନ ସେଫ୍‌ସାଇଡ଼୍ କରିଚାଲିବା ଏହା ହିଁ ସବୁଠୁ ବଡ଼ ପ୍ରତିକାର ।

ତୁମକୁ ପୁଅ-ଝିଅଙ୍କ ଅଭିଭାବକ ହୋଇ, ଟ୍ରଷ୍ଟି ପରି ରହିବାର ଅଛି । ତାଙ୍କ ବାହାଘରର ଚିନ୍ତା କରିବା ଉଚିତ ନୁହେଁ । ଝିଅ ନିଜର ହିସାବ ନେଇ ଆସିଥାଏ । ଝିଅ

ବିଷୟରେ ଚିନ୍ତା ତୁମକୁ କରିବାର ନାହିଁ । ଝିଅର ତୁମେ ପାଳନକର୍ତ୍ତା ଅଟ । ଝିଅ ନିଜ ପାଇଁ ପୁଅ ବି ନେଇ ଆସିଥାଏ । କାହାକୁ କହିବା ପାଇଁ ଯିବାକୁ ପଡ଼େ ନାହିଁ ଆମକୁ ଯେ ଆମର ଝିଅ ଅଛି, ତା'ପାଇଁ ପୁଅ ଜନ୍ମ କର । କ'ଣ ଏମିତି କହିବା ପାଇଁ ଯିବାକୁ ପଡ଼େ ? ଅର୍ଥାତ ନିଜର ସବୁକିଛି ନେଇ ଆସିଥାଏ । ସେତେବେଳେ ବାପ କହିବ, 'ଏ ପଚିଶ ବର୍ଷର ହେଲା, ଏବେ ବି ତା'ର ଠିକଣା ହୋଇନାହିଁ, ଏମିତି-ସେମିତି,' ଏମିତି ସାରାଦିନ ଗାଇ ଚାଲିଥାଏ । ଆରେ! ସେଠାରେ ପୁଅ ସତେଇଶି ବର୍ଷର ହେଲାଣି, କିନ୍ତୁ ତୋତେ ମିଳିନାହିଁ, କାହିଁକି ଚିତ୍କାର କରୁଛୁ ? ଶୋଇ ଯା ଚୁପଚାପ! ସେ ଝିଅ ନିଜର ଟାଇମିଙ୍ଗ୍ (ସମୟ) ସବୁ ସେଟ୍ କରି ଆସିଛି ।

ଚିନ୍ତା କରିବା ଦ୍ୱାରା ତ ଅନ୍ତରାୟ କର୍ମ ପଡ଼େ ଓଲଟା । ସେ କାର୍ଯ୍ୟ ବିଳମ୍ବିତ ହୁଏ । ଆମକୁ କେହି କହିଥିବ ଯେ ଅମକ ଜାଗାରେ ଗୋଟିଏ ପୁଅ ଅଛି, ତେବେ ଆମକୁ ପ୍ରୟାସ କରିବାର ଅଛି । ଚିନ୍ତା କରିବାକୁ ଭଗବାନ 'ନା' କହିଛନ୍ତି । ଚିନ୍ତା କରିବା ଦ୍ୱାରା ତ ଆଉ ଗୋଟିଏ ଅନ୍ତରାୟ ପଡ଼େ ଆଉ ବୀତରାଗ ଭଗବାନ କ'ଣ କହିଛନ୍ତି ନା 'ତୁମେ ଚିନ୍ତା କରୁଛ ତେବେ କ'ଣ ତୁମେ ହିଁ ମାଲିକ ? ତୁମେ ହିଁ ଦୁନିଆ ଚଲାଉଛ ?' ଏମିତି ଯଦି ଦେଖିବା ତେବେ ଜଣା ପଡ଼ିବ ଯେ ପାଇଖାନା ଯିବା ପାଇଁ ମଧ୍ୟ ନିଜର ସ୍ୱତନ୍ତ୍ର ଶକ୍ତି ନାହିଁ । ଯଦି ବନ୍ଦ ହୋଇଯାଏ ତେବେ ଡାକ୍ତର ଡାକିବାକୁ ପଡ଼େ । ସେପର୍ଯ୍ୟନ୍ତ ଏପରି ଲାଗେ ଯେ ଏ ଶକ୍ତି ଆମର ଅଟେ, କିନ୍ତୁ ଏହି ଶକ୍ତି ଆମର ନୁହେଁ । ଏହି ଶକ୍ତି କାହା ଅଧୀନରେ ଅଛି ଏସବୁ ଜାଣିବାକୁ ପଡ଼ିବ ।

ଏ ତ ଅନ୍ତ ସମୟରେ ଖଟିଆରେ ପଡ଼ିଥିବ, ସେତେବେଳେ ମଧ୍ୟ ସାନ ଝିଅର ଚିନ୍ତା କରେ ଯେ, ଯାର ବାହାଘର କରିବା ରହିଗଲା । ଏପରି ଚିନ୍ତାରେ ହିଁ ଚିନ୍ତାରେ ମରେ ତେବେ ପୁଣି ପଶୁଯୋନିରେ ଯାଏ । ପଶୁଯୋନିରେ ଜନ୍ମ ନିନ୍ଦ୍ୟ ଅଟେ, କିନ୍ତୁ ମନୁଷ୍ୟଜନ୍ମ ପାଇ ମଧ୍ୟ ସିଧା ନ ରୁହେ ତେବେ କ'ଣ ହେବ ?

## (୧୩) ଭଲ ହେଲା, ବନ୍ଧା ନହେଲା ଜଞ୍ଜାଳ...

**ଦାଦାଶ୍ରୀ :** କ'ଣ କେବେ ଚିନ୍ତା କରୁଛ ?

**ପ୍ରଶ୍ନକର୍ତ୍ତା :** ଚିନ୍ତା ବେଶୀ ନାହିଁ । କିନ୍ତୁ କେବେ-କେବେ ଏପରି ଲାଗେ ଯେ, ସେମିତି ତ ସବୁକିଛି ଅଛି କିନ୍ତୁ ପୁଅ ନାହିଁ ।

**ଦାଦାଶ୍ରୀ :** ଓ ହୋ ହୋ! ଅର୍ଥାତ ଖାଇବାବାଲା କେହି ନାହିଁ । ଏତେ ସବୁ ଅଛି ତଥାପି, ଖାଇବାର ସବୁକିଛି ଅଛି କିନ୍ତୁ ଖାଇବାବାଲା କେହି ନଥିବ ତେବେ ତାହା ପୁଣି ଚିନ୍ତା (*ଉପାଧି*) ହିଁ ଅଟେ ନା ?

କେଉଁ ଜନ୍ମରେ ଯେବେ ବହୁତ ପୁଣ୍ୟବାନ ହୋଇଥିବ, ତେବେ ପିଲା ହୁଅନ୍ତି ନାହିଁ । କାହିଁକିନା ପିଲା ହେବା-ନହେବା ସବୁ ନିଜ କର୍ମ ଖାତାର ହିସାବ ଅଟେ । ଏହି ଜନ୍ମରେ ମହାନ ପୁଣ୍ୟବାନ ଅଟ ଯେ ତୁମର ପିଲା ହେଲେ ନାହିଁ । ଏଭଳି ଲୋକ ବହୁତ ପୁଣ୍ୟବାନ କୁହାଯାନ୍ତି । ଭାଇ, ତୋତେ କିଏ ଏମିତି ଶିଖାଇଲା ? ତେବେ କହିଲା, 'ମୋ ସ୍ତ୍ରୀ ସବୁଦିନ ଖିଟ୍‌ପିଟ୍ କରୁଛି ।' ମୁଁ କହିଲି, 'ମୁଁ ଆସିବି ସେଠାକୁ ।' ପରେ ମୁଁ ତା ସ୍ତ୍ରୀକୁ ବୁଝାଇଲି ତେବେ ବୁଝିଗଲା । ମୁଁ କହିଲି ଦେଖ, ୟାଙ୍କୁ (ସ୍ୱାମୀଙ୍କୁ) ତ କିଛି ଅସୁବିଧା ନାହିଁ । ତୁମ ଖାତାରେ କାଗଜ ହିଁ ନାହିଁ, ବହୁତ ଭଲ କଥା, ନୁହେଁ ? ଏଣୁ ତୁମେ ପରମ ସୁଖୀ ଅଟ ।

କିଛି ବି ସନ୍ତାନ ନଥିବ ଆଉ ପୁଅର ଜନ୍ମ ହେବ ତେବେ ସେ ପୁଅ ବାପକୁ ବହୁତ ଖୁସି କରାଏ, ତା'କୁ ବହୁତ ଆନନ୍ଦ ଦିଏ । କିନ୍ତୁ ଯେତେବେଳେ ସେ ଯାଏ, ସେତେବେଳେ କନ୍ଦାଏ ବି ସେତିକି । ଏଣୁ ଆମକୁ ଏତିକି ଜାଣିନେବାର ଅଛି ଯେ ସେ ଆସିଛି, ତେବେ ଯିବ ସେତେବେଳେ କ'ଣ-କ'ଣ ହେବ ? ଏଣୁ ଆଜିଠୁ ହସିବ ହିଁ ନାହିଁ, ତେବେ ପରେ ଅସୁବିଧା ହିଁ ଆସିବ ନାହିଁ ନା !

ପିଲାମାନେ ତ ଆମର ରାଗ୍-ଦ୍ୱେଷର ହିସାବ ଅଟନ୍ତି । ପଇସାର ହିସାବ ନୁହେଁ, ରାଗ୍-ଦ୍ୱେଷର ଋଣାନୁବନ୍ଧ ଅଟନ୍ତି । ରାଗ୍-ଦ୍ୱେଷର ହିସାବ ପରିଶୋଧ କରିବା ପାଇଁ ଏ ପିଲାମାନେ ବାପର ତେଲ ବାହାର କରିଦିଅନ୍ତି, ଘଣାରେ ପେଶନ୍ତି । ଶ୍ରେଣୀକ ରାଜାଙ୍କର ବି ପୁଅ ଥିଲା ଏବଂ ସେ ତାଙ୍କୁ ସବୁଦିନ ପିଟୁଥିଲା, ଜେଲରେ ବି ଭର୍ତ୍ତି କରି ଦେଇଥିଲା ।

କୁହନ୍ତି ଯେ ମୋର ପିଲା ନାହିଁ । ପିଲା କ'ଣ କରିବ ? ଯେଉଁମାନେ ହଇରାଣ କରନ୍ତି ସେଭଳି ପିଲା କେଉଁ କାମର ? ତାହା ଅପେକ୍ଷା ତ ପିଲା ନ ଥିବ ତାହା ଭଲ ଏବଂ କେଉଁ ଜନ୍ମରେ ତୋର ପିଲା ନଥିଲା ? ଏବେ ଏହି ମନୁଷ୍ୟ ଜନ୍ମ ବଡ଼ କଷ୍ଟରେ ମିଳିଛି, ତେବେ ଭାଇ, ସିଧା ମର ନା ! ଆଉ କିଛି ମୋକ୍ଷର ସାଧନ ଖୋଜି ବାହାର କର ଏବଂ ନିଜର କାମ କାଢ଼ି ନେ ।

**ପ୍ରଶ୍ନକର୍ତ୍ତା :** ଗତବର୍ଷ ୟାଙ୍କର ଏକ ପୁଅ ମରିଗଲା ନା, ତେବେ କୁହନ୍ତି ଯେ ମୋତେ ବହୁତ ଦୁଃଖ ହେଲା ଏବଂ ମାନସିକ ରୂପରେ ବହୁତ ସହନ କରିବାକୁ ପଡ଼ିଲା । ଏଥିରେ ମୋତେ ଏପରି ଜାଣିବାକୁ ଇଚ୍ଛା ହେଉଛି ଯେ ପୂର୍ବଜନ୍ମରେ ଆମେ ଏପରି କ'ଣ କରିଥିବୁ, ଯେ ଯାହା କାରଣରୁ ଏପରି ହେଲା ?

**ଦାଦାଶ୍ରୀ :** ଏପରି ଅଟେ, ଯାହାର ଯେତିକି ହିସାବ, ସେତିକି ହିଁ ସେ ଆମ

ସାଥିରେ ରହେ, ପରେ ହିସାବ ପୁରା ହେବା କ୍ଷଣି ଆମ ଖାତାରୁ ଅଲଗା ହୋଇଯାଏ । ବାସ୍ ଏତିକି ହିଁ ଏହାର ନିୟମ ।

**ପ୍ରଶ୍ନକର୍ତ୍ତା :** କେଉଁ ପିଲା ଜନ୍ମ ହେବାପରେ ତୁରନ୍ତ ମରିଯାଏ, ତେବେ କ'ଣ ତା'ର ସେତିକି ହିଁ ଦିଆନିଆ ଥାଏ ?

**ଦାଦାଶ୍ରୀ :** ମାତା-ପିତାଙ୍କ ସହ ଯେତିକି ରାଗ୍-ଦ୍ୱେଷର ହିସାବ ଅଛି, ସେତିକି ପୂରା ହୋଇଗଲା, ପରିଣାମ ସ୍ୱରୂପ ମାତା-ପିତାଙ୍କୁ କନ୍ଦାଇ ଚାଲିଯାଏ, ବହୁତ କନ୍ଦାଏ, ମୁଣ୍ଡ ବି ଫଟାଏ । ପୁଅ ଡାକ୍ତରର ଖର୍ଚ୍ଚ ବି କରାଏ, ସବୁକିଛି କରାଇ ଚାଲିଯାଏ !

ପିଲାଙ୍କ ମୃତ୍ୟୁ ପରେ ତାଙ୍କ ପାଇଁ ଚିନ୍ତା କଲେ ତାଙ୍କୁ ଦୁଃଖ ସହିବାକୁ ପଡ଼େ । ଆମ ଲୋକେ ଅଜ୍ଞାନତା କାରଣରୁ ଏପରି ସବୁ କରନ୍ତି । ସେଥିପାଇଁ ତୁମକୁ ଯଥାର୍ଥ ରୂପେ ବୁଝି ଶାନ୍ତିରେ ରହିବା ଉଚିତ । ଅଯଥା ମୁଣ୍ଡଖରାପ କରିବା ତାହାର ଅର୍ଥ କ'ଣ ? କେଉଁଠି ମରୁ ନାହାନ୍ତି ପିଲାମାନେ ? ଏମାନେ ତ ସାଂସାରିକ ଋଣାନୁବନ୍ଧ ଅଟନ୍ତି । ଦିଆନିଆର ହିସାବ ଅଟନ୍ତି । ମୋର ବି ପୁଅ-ଝିଅ ଥିଲେ, କିନ୍ତୁ ସେମାନେ ମରିଗଲେ । ଅତିଥି ଆସିଥିଲା ସେ ଅତିଥି ଗଲା, ସେ ନିଜର କେଉଁଠି ? କ'ଣ ଆମକୁ ବି ଦିନେ ଯିବାର ନାହିଁ ? ଆମକୁ ତ ଯେଉଁମାନେ ଜୀବିତ ଅଛନ୍ତି ସେମାନଙ୍କୁ ଶାନ୍ତି ଦେବାର ଅଛି । ଯିଏ ଗଲା ସେ ତ ଗଲା । ତା'କୁ ମନେ ପକାଇବା ମଧ୍ଯ ଛାଡ଼ିଦିଅ । ଏଠି ଜୀବିତ ଥିବେ, ଯେତିକି ଆମର ଆଶ୍ରିତ ଥିବେ, ସେମାନଙ୍କୁ ଶାନ୍ତି ଦିଅ, ସେତିକି ଆମର କର୍ତ୍ତବ୍ୟ । ଏ ତ ଯିବାବାଲାଙ୍କୁ ମନେ ପକାନ୍ତି ଆଉ ଥିବାବାଲାଙ୍କୁ ଶାନ୍ତି ଦେଇ ପାରନ୍ତି ନାହିଁ, ଏ କ'ଣ ? ଅତଃ କର୍ତ୍ତବ୍ୟ ଭୁଲି ଯାଉଛ ସବୁ । ତୁମକୁ ଏପରି ଲାଗୁଛି ? ଗଲା ସେ ଗଲା । ପକେଟରୁ ଲକ୍ଷେ ଟଙ୍କା କେଉଁଠି ଖସି ପଡ଼େ ଏବଂ ପୁଣି ହାତକୁ ନ ଆସେ, ତେବେ ଆମକୁ କ'ଣ କରିବା ଉଚିତ ? କ'ଣ ମୁଣ୍ଡ ପିଟିବା ଉଚିତ ?

**ପ୍ରଶ୍ନକର୍ତ୍ତା :** ତାହାକୁ ଭୁଲିଯିବୁ ।

**ଦାଦାଶ୍ରୀ :** ହଁ, ଅତଃ ଏସବୁ ନିର୍ବୋଧତା ଅଟେ । ପ୍ରକୃତରେ ବାପ-ପୁଅ କେହି ବି ନୁହଁନ୍ତି । ପୁଅ ମରିଯାଏ ତେବେ ଚିନ୍ତା କରିବା ଭଳି ନୁହେଁ । ବାସ୍ତବରେ ସଂସାରରେ ଯଦି ଚିନ୍ତା କରିବା ଭଳି ଅଟେ ତେବେ ତାହା ମାତା-ପିତାଙ୍କ ମୃତ୍ୟୁ ହୁଏ, ସେତେବେଳେ ମନରେ ଚିନ୍ତା ହେବା ଉଚିତ । ପୁଅ ମରିଯାଏ ତେବେ ପୁଅ ସହ ଆମର କ'ଣ ନେବା-ଦେବା ? ମାତା-ପିତା ତ ଆମ ଉପରେ ଉପକାର କରିଥିଲେ । ମାତା ତ ଆମକୁ ନଅ ମାସ ପେଟରେ ରଖିଲା, ପୁଣି ବଡ଼ କଲା । ପିତା ପାଠପଢ଼ା

ପାଇଁ ଫିସ ଦେଇଛନ୍ତି ଆହୁରି ବହୁତ କିଛି ଦେଇଛନ୍ତି ।

ତୁମକୁ ମୋ କଥା ବୁଝାପଡୁଛି ? ଏଣୁ ଯେତେବେଳେ ମନେ ପଡ଼ିବ, ସେତେବେଳେ ଏତିକି କହିବ ଯେ 'ହେ ଦାଦା ଭଗବାନ, ଏ ପୁଅ ଆପଣଙ୍କୁ ସମର୍ପି ଦେଲି !' ଏହାଦ୍ୱାରା ତୁମକୁ ସମାଧାନ ମିଳିବ । ତୁମ ପୁଅକୁ ସ୍ମରଣ କରି ତା' ଆତ୍ମାର କଲ୍ୟାଣ ହେଉ ଏପରି ମନରେ କହିଚାଲିବ, ଆଖିରେ ପାଣି ଆସିବାକୁ ଦେବ ନାହିଁ । ତୁମେ ତ ଜୈନ ଥିଓରୀ (ସିଦ୍ଧାନ୍ତ) ବୁଝିବାବାଲା ବ୍ୟକ୍ତି । ତୁମେ ତ ଜାଣିଛ ଯେ କାହାର ମରିଯିବା ପରେ ଏପରି ଭାବନା କରିବା ଉଚିତ ଯେ, 'ତା ଆତ୍ମାର କଲ୍ୟାଣ ହେଉ । ହେ କୃପାଳୁଦେବ, ତା' ଆତ୍ମାର କଲ୍ୟାଣ କର ।' ଏହା ନକରି ଆମେ ମନରେ ଦୁର୍ବଳ ହେବା, ଏହା ତ ଠିକ୍ ନୁହେଁ । ନିଜର ହିଁ ସ୍ୱଜନକୁ ଦୁଃଖରେ ପକାଇବା ଏହା ଆମର କାମ ନୁହେଁ । ତୁମେ ତ ସମଝଦାର(ବୁଦ୍ଧିମାନ), ବିଚାରଶୀଳ ଏବଂ ସଂସ୍କାରୀ ମନୁଷ୍ୟ ଅଟ, ଏଣୁ ଯେବେ-ଯେବେ ମୃତ ପୁଅ ମନେ ପଡ଼େ, ସେତେବେଳେ ଏପରି କହିବ ଯେ, 'ତା ଆତ୍ମାର କଲ୍ୟାଣ ହେଉ । ହେ ବୀତରାଗ ଭଗବାନ, ତା ଆତ୍ମାର କଲ୍ୟାଣ କର ।' ଏପରି କହିଚାଲିବ । କୃପାଳୁଦେବଙ୍କ ନାମ ନେବ, ଦାଦା ଭଗବାନ କହିବ ତେବେ ମଧ୍ୟ ତୁମ କାମ ହେବ । କାରଣ ଦାଦା ଭଗବାନ ଏବଂ କୃପାଳୁଦେବ ଆତ୍ମସ୍ୱରୂପରେ ଏକ ହିଁ ଅଟନ୍ତି । ଦେହରେ ଅଲଗା ଦେଖାଯାନ୍ତି । ଆଖିରେ ଅଲଗା ଦେଖାଯାନ୍ତି । କିନ୍ତୁ ବସ୍ତୁତ୍ୱ ଏକ ହିଁ ଅଟେ । ଏଣୁ ମହାବୀର ଭଗବାନଙ୍କ ନାମ ନେବ, ତେବେ ମଧ୍ୟ ସେହି ସମାନ କଥା । 'ତା ଆତ୍ମାର କଲ୍ୟାଣ ହେଉ' ଏତିକି ହିଁ ଭାବନା ନିରନ୍ତର ଆମକୁ ରଖିବାର ଅଛି । ଆମେ ଯାହା ସହିତ ନିରନ୍ତର ରହିଛେ, ସାଥିରେ ଖାଇଛେ-ପିଇଛେ, ତେବେ ତାଙ୍କର କିପରି କଲ୍ୟାଣ ହେଉ ଏପରି ଭାବନା ଆମେ କରିଚାଲିବା । ଆମେ ପର ପାଇଁ ଭଲ ଭାବନା କରୁଛେ, ତେବେ ପୁଣି ଏ ତ ଆମ ନିଜ ଲୋକ ପାଇଁ କ'ଣ ନକରିବା ?

ମୁଁ ପୁସ୍ତକରେ ଲେଖିଛି ଯେ ତୋତେ 'କଳ୍ପ'ର ଅନ୍ତ ଯାଏଁ ଭଟକିବାକୁ ପଡ଼ିବ । ତାହାର ନାମ 'କଳ୍ପାନ୍ତ' । କଳ୍ପାନ୍ତର ଅର୍ଥ ଆଉ କେହି କରିନାହିଁ ନା ? ତୁମେ ଆଜି ପ୍ରଥମ ଥର ଶୁଣିଲ ନା ?

**ପ୍ରଶ୍ନକର୍ତ୍ତା :** ହଁ, ପ୍ରଥମ ଥର ଶୁଣିଲି ।

**ଦାଦାଶ୍ରୀ :** ଅତଃ ଏହି 'କଳ୍ପ'ର ଅନ୍ତ ଯାଏଁ ଭଟକିବାକୁ ପଡ଼େ ଆଉ ଲୋକେ କ'ଣ କରନ୍ତି ? ବହୁତ କଳ୍ପାନ୍ତ କରନ୍ତି । ଆରେ ଭାଇ, କଳ୍ପାନ୍ତର ଅର୍ଥ ତ ପଚାରେ ଯେ କଳ୍ପାନ୍ତ ମାନେ କ'ଣ ? କଳ୍ପାନ୍ତ ତ କେହି ଜଣେ ଅଧେ ମଣିଷ କରେ ।

କଷ୍ଟାନ୍ତ ତ କାହାର ଗୋଟିକିଆ ପୁଅ ଥିବ, ତା'ର ଅଚାନକ ମୃତ୍ୟୁ ହୋଇଯାଏ ସେହି ସ୍ଥିତିରେ କଷ୍ଟାନ୍ତ ହୋଇପାରେ ।

**ପ୍ରଶ୍ନକର୍ତ୍ତା :** ଦାଦାଜୀଙ୍କର କେତେ ପିଲା ଥିଲେ ?

**ଦାଦାଶ୍ରୀ :** ଗୋଟିଏ ପୁଅ ଏବଂ ଗୋଟିଏ ଝିଅ ଥିଲା । ୧୯୨୮ରେ ପୁତ୍ର ଜନ୍ମ ହେଲା ସେତେବେଳେ ମୁଁ ମିତ୍ରମାନଙ୍କୁ ପେଡ଼ା ଖୁଆଇଥିଲି । ପରେ ୧୯୩୧ରେ ଚାଲିଗଲା । ସେତେବେଳେ ମୁଁ ପୁଣି ସମସ୍ତଙ୍କୁ ପେଡ଼ା ଖୁଆଇଲି । ପ୍ରଥମେ ତ ସମସ୍ତେ ଏପରି ଭାବିଲେ ଯେ ଦ୍ୱିତୀୟ ପୁତ୍ର ଜନ୍ମିଥିବ, ସେଥିପାଇଁ ପେଡ଼ା ଖୁଆଉ ଥିବେ । ପେଡ଼ା ଖୁଆଇଲି ସେପର୍ଯ୍ୟନ୍ତ ମୁଁ ସ୍ପଷ୍ଟୀକରଣ ଦେଲି ନାହିଁ । ଖୁଆଇବା ପରେ ମୁଁ ସମସ୍ତଙ୍କୁ କହିଲି, 'ସେ 'ଗେଷ୍ଟ' ଆସିଥିଲେ ନା, ସେ ଗଲେ !' ସେ ସମ୍ମାନପୂର୍ବକ ଆସିଥିଲେ, ତେବେ ଆମେ ତାଙ୍କୁ ସମ୍ମାନପୂର୍ବକ ବିଦା କରିବା । ସେଥିପାଇଁ ଏ ସମ୍ମାନ କଲି । ଏହା ଶୁଣି ସମସ୍ତେ ମୋତେ ଗାଳି କରିବାକୁ ଲାଗିଲେ । ଆରେ, ଗାଳି କର ନାହିଁ, ସମ୍ମାନପୂର୍ବକ ବିଦା କରିବା ଉଚିତ ।

ପରେ 'ଝିଅ' ଆସିଥିଲା । ତା'କୁ ବି ସମ୍ମାନପୂର୍ବକ ଡାକିଲି ଏବଂ ସମ୍ମାନପୂର୍ବକ ବିଦାକଲି । ଏହି ଦୁନିଆରେ ଯେଉଁମାନେ ଆସନ୍ତି, ସେମାନେ ସମସ୍ତେ ଯାଆନ୍ତି । ପରେ ତ ଆଉ କେହି ନାହିଁ, ମୁଁ ଏବଂ ହୀରାବା (ଦାଦାଜୀଙ୍କ ଧର୍ମପତ୍ନୀ) ଦୁଇଜଣ ହିଁ ଅଛୁ ।

ଜ୍ଞାନ ହେବା ପୂର୍ବରୁ ଦିନେ ହୀରାବା କହିଲେ, 'ପିଲାମାନେ ମରିଗଲେ ଏବଂ ଏବେ ଆମର ପିଲା ନାହାନ୍ତି, କ'ଣ କରିବା ଆମେ ? ବୃଦ୍ଧାବସ୍ଥାରେ ଆମର ସେବା କିଏ କରିବ ?' ତାଙ୍କୁ ଚିନ୍ତା ହେଲା ! ଚିନ୍ତା ହୁଏନି ? ସେତେବେଳେ ମୁଁ ତାଙ୍କୁ ବୁଝାଇଲି, 'ଆଜିକାଲିର ପିଲା ତୁମର ଦମ୍ ବାହାର କରିଦେବେ । ପିଲାମାନେ ମଦ ପିଇ ଆସିବେ, ସେତେବେଳେ ତୁମକୁ ଭଲ ଲାଗିବ ?' ତେବେ ସେ କହିଲେ, 'ନା, ତାହା ତ ଭଲ ଲାଗିବ ନାହିଁ ।' ସେତେବେଳେ ମୁଁ କହିଲି, 'ଏମାନେ ଆସିଥିଲେ ସେମାନେ ଗଲେ, ସେଥିପାଇଁ ମୁଁ ପେଡ଼ା ଖୁଆଇଲି ।' ତା'ପରେ ଯେବେ ତାଙ୍କୁ ଅନୁଭବ ହେଲା, ତେବେ ମୋତେ କହିବାକୁ ଲାଗିଲେ, 'ସମସ୍ତଙ୍କ ପିଲା ବହୁତ ଦୁଃଖ ଦେଉଛନ୍ତି ।' ମୁଁ କହିଲି 'ମୁଁ ତ ପ୍ରଥମରୁ ହିଁ କହୁଥିଲି, କିନ୍ତୁ ତୁମେ ମାନୁ ନଥିଲ ।'

ଯିଏ ଅନ୍ୟର ଅଟେ, ସେ କେବେ ନିଜର ହୋଇପାରିବ ? ଅଯଥାରେ ହାୟ-ହାୟ କରିବା । ଏହି ଦେହ ଯାହା ପର ଅଟେ, ସେହି ଦେହର ସେମାନେ ବନ୍ଧୁ-ବାନ୍ଧବ ! ଏହି ଦେହ ପର ଏବଂ ସେ ପରଦେହର ଏ ସବୁ ସମ୍ପତ୍ତି । କେବେ ନିଜର ହେଉଥିବ ?

**ପ୍ରଶ୍ନକର୍ତ୍ତା :** କ'ଣ କରିବୁ? ଗୋଟିକିଆ ପୁଅ । ସେ ଆମଠାରୁ ଅଲଗା ହୋଇଯାଇଛି ।

**ଦାଦାଶ୍ରୀ :** ତାହା ତ ଯଦି ତିନିଜଣ ଥିବେ, ତେବେ ମଧ୍ୟ ଅଲଗା ହୋଇଯାନ୍ତି ଆଉ ଯଦି ସେମାନେ ଅଲଗା ନହେବେ ତଥାପି ଆମକୁ ଯିବାକୁ ତ ପଡ଼ିବ । ପୁଣି ପଛେ ସମସ୍ତେ ଏକାଠି ରୁହନ୍ତୁ ତଥାପି ଦିନେ ସବୁକିଛି ଛାଡ଼ି ଆମକୁ ଯିବାକୁ ପଡ଼ିବ । ଛାଡ଼ିକରି ଯିବାକୁ ପଡ଼ିବ ନାହିଁ? ତେବେ ପୁଣି ହାୟ-ହାୟ କ'ଣ ପାଇଁ? ଗତ ଜନ୍ମର ପିଲା କୁଆଡ଼େ ଗଲେ? ଗତ ଜନ୍ମର ପିଲା କେଉଁଠି ରହୁଛନ୍ତି?

**ପ୍ରଶ୍ନକର୍ତ୍ତା :** ଭଗବାନଙ୍କୁ ଜଣା ।

**ଦାଦାଶ୍ରୀ :** ନିଅ! ଗତଜନ୍ମର ପିଲାଙ୍କ ଠିକଣା ନାହିଁ । ଏହି ଜନ୍ମରେ ପିଲାଙ୍କ ପାଇଁ ପୁଣି ସେହି ଦଶା । ଏହାର ଅନ୍ତ କେବେ ଆସିବ? ମୋକ୍ଷ ଯିବା ପାଇଁ କିଛି କର, ନହେଲେ ବେକାରରେ ଅଧୋଗତିରେ ଚାଲିଯିବ । *ଉପାଧି*ରେ ଯେବେ ଥକି ଯାଏ (ଦୁଃଖୀ ହୋଇ ହୋଇ ଶେଷରେ ଥକି ଯିବା, ବିରକ୍ତ ହୋଇଯିବା), ତେବେ ତା'ର କେଉଁ ଗତି ହୁଏ? ଏଠାରୁ ପୁଣି ମନୁଷ୍ୟ ଗତିରୁ କେଉଁ ଗତିରେ ଜନ୍ମ ହେବ? ପଶୁଗତି, ଅତି ନିନ୍ଦନୀୟ କାର୍ଯ୍ୟ ହୋଇଥିବ ତେବେ ନର୍କଗତିରେ ବି ଯିବାକୁ ପଡ଼ିପାରେ । ନର୍କଗତି-ପଶୁଗତି କ'ଣ ପସନ୍ଦ?

ଗୋଟିଏ-ଗୋଟିଏ ଜନ୍ମରେ ଭୟଙ୍କର ମାଡ଼ ଖାଇଛେ (ଅସୁବିଧା ଭୋଗିଛେ), କିନ୍ତୁ ପୂର୍ବର ଖାଇଥିବା ମାଡ଼ ଭୁଲିଚାଲେ ଏବଂ ନୂଆ ମାଡ଼ ଖାଇଚାଲେ । ପୂର୍ବ ଜନ୍ମର ପିଲା ଛାଡ଼ି ଆସେ ଏବଂ ନୂଆ, ଏହି ଜନ୍ମର ପିଲାଙ୍କୁ କୋଳାଇ ଧରେ ।

## (୧୪) ସମ୍ବନ୍ଧ, ରିଲେଟିଭ ନା ରିୟଲ?

ଏହା ରିଲେଟିଭ ସମ୍ବନ୍ଧ ଅଟେ! ସମ୍ଭାଳି-ସମ୍ଭାଳି କାମ ନେବାର ଅଛି । ଏହା ରିଲେଟିଭ ସମ୍ବନ୍ଧ, ଏଣୁ ତୁମେ ଯେତିକି ରିଲେଟିଭ ରଖିବ ସେତିକି ରହିବ । ତୁମେ ଯେମିତି ରଖିବ ସେମିତି ରହିବ, ଏହାର ନାମ ବ୍ୟବହାର ।

ତୁମେ ମାନୁଛ ଯେ ପୁଅ ମୋର ଅଟେ, ଏଣୁ କୁଆଡ଼େ ଯିବ? ଆରେ! ତୁମ ପୁଅ, କିନ୍ତୁ କ୍ଷଣଭରରେ ବିରୋଧୀ ହୋଇଯିବ । କୌଣସି ଆତ୍ମା ବାପ-ପୁଅ ହୁଏ ନାହିଁ । ଏହା ତ ପାରସ୍ପରିକ ଦିଆ-ନିଆର ହିସାବ ଅଟେ । ଘରକୁ ଯାଇ ଏପରି କହିବ ନାହିଁ ଯେ ତୁମେ ମୋ ବାପା ନୁହେଁ । ସେମିତିରେ ତ ସେ ବ୍ୟବହାରରେ ବାପା ହିଁ ଅଟନ୍ତି ନା!

ସଂସାରରେ ଡ୍ରାମାଟିକ୍ ରହିବାର ଅଛି । 'ଆସନ୍ତୁ ଭଉଣୀ, ଆସ ଝିଅ' ଏପରି, ଏସବୁ ସୁପରଫ୍ଲ୍ୟୁଅସ(ଦେଖାଣିଆ) ବ୍ୟବହାର କରିବାର ଅଛି । ସେତେବେଳେ ଅଜ୍ଞାନୀ କ'ଣ କରେ ନା ଝିଅକୁ କୋଳରେ ବସେଇ ଚାଲିଥାଏ, ଝିଅ ବି ତା'ଉପରେ ଚିଡୁଥାଏ ଯେବେକି ଜ୍ଞାନୀପୁରୁଷ ବ୍ୟବହାରରେ ସୁପରଫ୍ଲୁଅସ ରୁହନ୍ତି । ସେଥିପାଇଁ ସମସ୍ତେ ତାଙ୍କ ଉପରେ ଖୁସି ରୁହନ୍ତି, କାହିଁକିନା ଲୋକେ ସୁପରଫ୍ଲୁଅସ ବ୍ୟବହାର ଚାହାନ୍ତି । ଅଧିକ ଆସକ୍ତି ଲୋକଙ୍କୁ ପସନ୍ଦ ନୁହେଁ । ଏଣୁ ଆମକୁ ବି ସୁପରଫ୍ଲୁଅସ ରହିବାର ଅଛି । ଏସବୁ ଝଂଝଟ୍‌ରେ ପଡ଼ିବାର ନାହିଁ ।

'ଜ୍ଞାନୀ' କ'ଣ ବୁଝନ୍ତି ? ଝିଅର ବାହାଘର ହେଲା, ତାହା ମଧ୍ୟ ବ୍ୟବହାର ଏବଂ ଝିଅ ବିଚାରି ବିଧବା ହେଲା, ତାହା ମଧ୍ୟ ବ୍ୟବହାର । ଏହା 'ରିଅଲ' ନୁହେଁ । ଏ ଉଭୟ ବ୍ୟବହାର ଅଟେ, ରିଲେଟିଭ ଅଟେ ଏବଂ କାହାଦ୍ୱାରା ବଦଳାଯାଇ ପାରିବ ନାହିଁ ଏପରି ଅଟେ ! ଏବେ ଏ ଲୋକେ କ'ଣ କରନ୍ତି ? ଜ୍ୱାଇଁ ଯଦି ମରିଯାଏ, ତା' ପଛରେ ମୁଣ୍ଡ ପିଟନ୍ତି, ସେତେବେଳେ ଓଲଟା ଡାକ୍ତର ଡାକିବାକୁ ପଡ଼େ । ଅର୍ଥାତ ତାହା ରାଗ୍-ଦ୍ୱେଷର ଅଧୀନ ଅଟେ ନା ! ବ୍ୟବହାର, ବ୍ୟବହାର ଅଟେ ଏପରି ବୁଝା ପଡୁନାହିଁ, ସେଥିପାଇଁ ନା !

ପିଲାଙ୍କୁ ଗାଳି କରିବାକୁ ପଡ଼େ, ସ୍ତ୍ରୀକୁ ଦୁଇ ଶବ୍ଦ କହିବାକୁ ପଡ଼େ ତେବେ ନାଟକୀୟ ଭାଷାରେ, ଥଣ୍ଡା ରହି ରାଗିବ । ନାଟକୀୟ ଭାଷା ଅର୍ଥାତ କ'ଣ ନା ଥଣ୍ଡା କଳିଜାରେ ରାଗିବା । ତାହାକୁ କୁହନ୍ତି ନାଟକ !

## (୧୫) ତାହା ଅଟେ ଦିଆ-ନିଆ, ସମ୍ବନ୍ଧ ନୁହେଁ

ସ୍ତ୍ରୀ-ଛୁଆପିଲା ଯଦି ନିଜର ହୋଇଥାନ୍ତେ ନା, ତେବେ ଏହି ଶରୀରକୁ କେତେ ବି ଦୁଃଖ (କଷ୍ଟ) ହୋଇଥାନ୍ତା ତେବେ ସେଥିରୁ ସ୍ତ୍ରୀ କିଛି ନେଇ ଯାଇଥାନ୍ତା, 'ଅର୍ଦ୍ଧାଙ୍ଗିନୀ' କୁହାଯାଏ ନା ! ପକ୍ଷାଘାତ ହୋଇ ଯାଇଥିବ ତେବେ ପୁଅ ନେଇଯିବ ? ନା, କେହି ନିଏ ନାହିଁ । ଏହା ତ ସବୁ ହିସାବ ଅଟେ ! ବାପ ପାଖରୁ ଯେତିକି ତୁମର ମାଗିବାର ହିସାବ ଥିଲା, ସେତିକି ହିଁ ତୁମକୁ ମିଳିଛି ।

ଜଣେ ପୁଅକୁ ତା' ମା, କିଛି ଭୁଲ ନକରେ ତଥାପି ମାରି ଚାଲିଥାଏ ଆଉ ଗୋଟିଏ ପୁଅ ବହୁତ ଉଦଣ୍ଡ ମଚାଉଥିବ, ତଥାପି ତା'କୁ ସ୍ନେହ କରୁଥାଏ । ପାଞ୍ଚଜଣ ସାରା ପୁଅ ସେହି ମା'ର ଅଟନ୍ତି କିନ୍ତୁ ପାଞ୍ଚଜଣଙ୍କ ପ୍ରତି ଅଲଗା ଅଲଗା ଆଚରଣ ହୁଏ, ଏହାର କାରଣ କ'ଣ ?

**ପ୍ରଶ୍ନକର୍ତ୍ତା :** ସେମାନଙ୍କ ଭିତରେ ପ୍ରତ୍ୟେକଙ୍କ କର୍ମର ଉଦୟ ଭିନ୍ନ ହୋଇଥିବ ?

**ଦାଦାଶ୍ରୀ :** ଏହା ତ ହିସାବ ହିଁ ସୁଝୁଅଛି । ମା'କୁ ପାଞ୍ଚ ପୁଅ ପ୍ରତି ସମାନ ଭାବ ରଖିବା ଉଚିତ, କିନ୍ତୁ ରହିବ କିପରି ? ଆଉ ପୁଣି ପୁଅମାନେ କୁହନ୍ତି, ମୋ ମା ତା' ପକ୍ଷ ନେଉଛି । ଏପରି ଚିଲ୍ଲାନ୍ତି । ଏହି ଦୁନିଆରେ ଏମିତି ଝଗଡ଼ା ଅଛି ।

**ପ୍ରଶ୍ନକର୍ତ୍ତା :** ତେବେ ସେହି ପୁଅ ପ୍ରତି ସେ ମା'କୁ ଏପରି ବୈର ଭାବ କାହିଁକି ହୁଏ ?

**ଦାଦାଶ୍ରୀ :** ତାହା ତା'ର କିଛି ପୂର୍ବଜନ୍ମର ବୈର ଅଟେ । ଅନ୍ୟ ପୁଅ ମାନଙ୍କ ପ୍ରତି ପୂର୍ବଜନ୍ମର ରାଗ(ଆସକ୍ତି) ଅଛି । ଏଣୁ ରାଗ୍ ପ୍ରଦର୍ଶନ କରେ । ଲୋକେ ନ୍ୟାୟ ଖୋଜନ୍ତି ଯେ ପାଞ୍ଚପୁଅ ତା'ପାଇଁ ସମାନ କାହିଁକି ନୁହେଁ ?

କିଛି ପୁଅ ନିଜ ମାତା-ପିତାଙ୍କ ସେବା କରନ୍ତି, ଏମିତି ସେବା କରନ୍ତି ଯେ ଖାଇବା-ପିଇବା ବି ଭୁଲିଯାନ୍ତି । ସମସ୍ତଙ୍କ ପାଇଁ ଏଭଳି ନୁହେଁ । ଆମକୁ ଯାହା ମିଳିଛି ସବୁ ନିଜର ହିଁ ହିସାବ ଅଟେ । ନିଜ ଦୋଷ କାରଣରୁ ଆମେ ଏକାଠି ହୋଇଛେ । ଏହି କଳିଯୁଗରେ ଆମେ କାହିଁକି ଆସିଲେ ? ସତ୍ୟଯୁଗ ନଥିଲା ? ସତ୍ୟଯୁଗରେ ସମସ୍ତେ ସିଧା ଥିଲେ । କଳିଯୁଗରେ ସବୁ ତେଢ଼ା ମିଳନ୍ତି । ପୁଅ ଭଲ ଥିବ ତେବେ ସମୁଦି ତେଢ଼ା ମିଳେ ଏବଂ ସେ ଲଢ଼େଇ-ଝଗଡ଼ା କରାଉ ଥାଏ । ବୋହୂ ଝଗଡ଼ାବାଲୀ ମିଳେ ଏବଂ ସବୁବେଳେ ଝଗଡ଼ା କରୁଥାଏ । କେହି ନା କେହି ଏପରି ମିଳିଯାଏ ଏବଂ ଘରେ ଲଢ଼େଇ ଝଗଡ଼ା ଚାଲୁ ରହିଥାଏ ଲଗାତାର ।

**ପ୍ରଶ୍ନକର୍ତ୍ତା :** 'ବନସ୍ପତିରେ ବି ପ୍ରାଣ ଅଛି' ଏପରି କୁହନ୍ତି । ଏବେ ଆମ୍ବଗଛ ହୋଇଥିବ, ସେ ଗଛର ଯେତେ ବି ଆମ୍ବ ଥିବ, ସେ ସବୁ ଆମ୍ବର ସ୍ୱାଦ ଏକାପରି ହୋଇଥାଏ, ଯେବେକି ଏହି ମନୁଷ୍ୟରେ ପାଞ୍ଚ ପିଲା ଥିବେ ତେବେ ପାଞ୍ଚଜଣସାରା ପିଲାଙ୍କର ବିଚାର-ବାଣୀ-ବର୍ତ୍ତନ (ବ୍ୟବହାର) ଅଲଗା-ଅଲଗା, ଏପରି କାହିଁକି ?

**ଦାଦାଶ୍ରୀ :** ଆମ୍ବରେ ବି ଅଲଗା-ଅଲଗା ସ୍ୱାଦ ଥାଏ, ତୁମର ବୁଝିବାଶକ୍ତି ନାହିଁ, କିନ୍ତୁ ପ୍ରତ୍ୟେକ ଆମ୍ବର ଅଲଗା-ଅଲଗା ସ୍ୱାଦ, ପ୍ରତ୍ୟେକ ପତ୍ରରେ ବି ଫରକ ଥାଏ । ଏକାପରି ଦେଖାଯାନ୍ତି, ଏକ ପ୍ରକାର ସୁଗନ୍ଧ ହୋଇଥିବ, କିନ୍ତୁ କିଛି ନା କିଛି ଫରକ ଥାଏ, କାହିଁକିନା ଏହି ସଂସାରର ନିୟମ ଏପରି ଅଟେ ଯେ 'ସ୍ପେସ୍'(ସ୍ଥାନ) ବଦଳିଲେ ଫରକ ହୁଏ ନିଶ୍ଚିତ ।

**ପ୍ରଶ୍ନକର୍ତ୍ତା :** ସାଧାରଣତଃ ଏପରି କହନ୍ତି ଯେ ଏସବୁ ଯେଉଁ ପରିବାର ଅଛି, ସେମାନେ ସମାନ ବଂଶ ପରମ୍ପରା ଅନୁସାରେ ଏକାଠି ହୁଅନ୍ତି ।

**ଦାଦାଶ୍ରୀ :** ହଁ, ସେମାନେ ସବୁ ଆମର ଚିହ୍ନା-ଜଣା ଲୋକ ହିଁ ହୋଇଥାନ୍ତି । ନିଜ ସର୍କଲ, ସାଥିରେ ରହୁଥିବାବାଲା, ସମାନ ଗୁଣବାଲା ଅଟନ୍ତି, ଏଥିପାଇଁ ରାଗ୍-ଦ୍ୱେଷ କାରଣରୁ ସେଠାରେ ଜନ୍ମ ନିଅନ୍ତି ଏବଂ ହିସାବ ସୁଝିବା ପାଇଁ ଏକାଠି ହୁଅନ୍ତି । ଆଖିକୁ ଏପରି ଦେଖାଯାଏ, କିନ୍ତୁ ତାହା ଭ୍ରାନ୍ତି ଯୋଗୁଁ, ଯେବେକି ଜ୍ଞାନରେ ଏପରି ନୁହେଁ ।

**ପ୍ରଶ୍ନକର୍ତ୍ତା :** ଏ ଯେଉଁ ଜନ୍ମ ନେବ, ସେ ନିଜ କର୍ମ ଅନୁସାରେ ଜନ୍ମ ନିଏ ନା ?

**ଦାଦାଶ୍ରୀ :** ହଁ, ନିଶ୍ଚିତ, ସେ ଗୋରା ହେଉ ଅବା କଳା ହେଉ, ବାଙ୍ଗରା ହେଉ ଅବା ଡେଙ୍ଗା ହେଉ, ତାହା ତା'ର କର୍ମ ଅନୁସାରେ । ଏହା ତ ଲୋକେ ଏହି ଆଖିରେ ଦେଖିଲେ ଯେ ପୁଅର ନାକ ତ ଏକ୍‌ଜାକ୍ଟ ସେହିପରି ଦିଶୁଛି, ଏଣୁ ବାପର ଗୁଣ ହିଁ ପୁଅ ପାଖକୁ ଆସିଛି । ତେବେ ବାପ ସଂସାରରେ କୃଷ୍ଣ ଭଗବାନ ହେଲେ, ତେବେ କ'ଣ ପୁଅ ବି କୃଷ୍ଣ ଭଗବାନ ହୋଇଗଲା ? ଏମିତି ତ ଅନେକ କୃଷ୍ଣ ଭଗବାନ ହୋଇଗଲେ । ସମସ୍ତ ପ୍ରକଟ ପୁରୁଷ କୃଷ୍ଣ ଭଗବାନ ହିଁ କୁହାଯାନ୍ତି । କିନ୍ତୁ ତାଙ୍କର ଗୋଟିଏ ବି ପୁତ୍ର କୃଷ୍ଣ ଭଗବାନ ହେଲା ? ଅତଃ ଏହା ତ ମନଗଢ଼ା କଥା ଅଟେ !!

ଯଦି ପିତାଙ୍କ ଗୁଣ ପୁତ୍ର ପାଖକୁ ଆସୁଥାନ୍ତା, ତେବେ ତ ସବୁ ପିଲାଙ୍କ ପାଖକୁ ସମାନ ରୂପରେ ଆସିବା ଉଚିତ । ଏହା ତ, ପିତାଙ୍କର ଯେଉଁମାନେ ପୂର୍ବଜନ୍ମର ଜଣାଶୁଣା ଥିଲେ, କେବଳ ସେମାନଙ୍କ ଗୁଣ ମିଳେ । ତୁମ ଜଣାଶୁଣା ଲୋକ ସବୁ କିପରି ଅଟନ୍ତି ? ତୁମ ବୁଦ୍ଧି ସହ ମେଳ ଖାଆନ୍ତି, ତୁମ ଆଶୟ ସହ ମେଳ ଖାଆନ୍ତି । ଯେଉଁମାନେ ତୁମ ସହ ମେଳ ଖାଉଥିବେ (ଗୁଣ, ବିଚାର ଏକପ୍ରକାର), ସେମାନେ ଏହି ଜନ୍ମରେ ପୁଣି ନିଜ ପିଲା ହେବେ । ଅର୍ଥାତ ତାଙ୍କ ଗୁଣ ତୁମସହ ମିଶେ, କିନ୍ତୁ ବାସ୍ତବରେ ତ ତାଙ୍କ ନିଜ ଗୁଣ ହିଁ ଧାରଣ କରନ୍ତି । ସାଇଣ୍ଟିଷ୍ଟ (ବୈଜ୍ଞାନିକ) ମାନଙ୍କୁ ଏପରି ଲାଗେ ଯେ ଏ ଗୁଣ ପରମାଣୁରୁ ଆସେ କିନ୍ତୁ ସେ ତ ନିଜେ ନିଜର ହିଁ ଗୁଣ ଧାରଣ କରେ । ପୁଣି କେହି ଖରାପ, ଅଯୋଗ୍ୟ ହୋଇଥିବ ତେବେ ମଦୁଆ ହୋଇ ମଧ୍ୟ ବାହାରେ । କାରଣ ଯେମିତି ଯେମିତି ସଂଯୋଗ ସେ ଏକାଠି କରିଥାଏ, ସେହିପରି ହିଁ ହୁଏ । କାହାକୁ ଉତ୍ତରାଧିକାରରେ କିଛି ବି ମିଳେ ନାହିଁ । ଅର୍ଥାତ ଉତ୍ତରାଧିକାର ତ କେବଳ ଦେଖାଇବା ପାଇଁ ଅଟେ । ନହେଲେ, ପୂର୍ବଜନ୍ମରେ ଯେଉଁ ତାଙ୍କର ଚିହ୍ନାଜଣା

ସବୁ ଥିଲେ, ସେମାନେ ହିଁ ଆସିଛନ୍ତି ।

**ପ୍ରଶ୍ନକର୍ତ୍ତା :** ମାନେ ଯେଉଁ ହିସାବ ସୁଝିବାର ଅଛି, ଋଣାନୁବନ୍ଧ ସୁଝିବାର ଅଛି, ତାହା ସୁଝିବା ପରେ ଚାଲିଯାନ୍ତି ?

**ଦାଦାଶ୍ରୀ :** ହଁ, ସୁଝିବା ପରେ ହିଁ ଯାଆନ୍ତି ସମସ୍ତେ । ଏଥିପାଇଁ ମୋତେ ଏଠାରେ ଏ ବିଜ୍ଞାନ ଖୋଲା କରିବାକୁ ପଡ଼ିଲା ଯେ ଆରେ ! ସେଥିରେ ବାପର କ'ଣ ଦୋଷ ? ତୁ କ୍ରୋଧୀ, ତୋ ବାପ କ୍ରୋଧୀ, କିନ୍ତୁ ତୋର ଏ ଭାଇ ଥଣ୍ଡା(ଶାନ୍ତ) କେମିତି ? ଯଦି ତୋ ଠାରେ ତୋ ବାପର ଗୁଣ ଉତ୍ପନ୍ନ ହୋଇଛି ତେବେ ତୋର ଏ ଭାଇ ଥଣ୍ଡା କେମିତି ? ଏସବୁ ବୁଝନ୍ତି ନାହିଁ, ସେଥିପାଇଁ ଲୋକେ ବିନା କାରଣରେ ଝଂଝଟ୍ କରନ୍ତି ଆଉ ଯାହା ଉପରୁ ଦେଖାଯାଏ, ତାହାକୁ ହିଁ ସତ୍ୟ ମାନନ୍ତି । କଥା ଗଭୀରତାର ସହ ବୁଝିବା ଯୋଗ୍ୟ ଅଟେ । ଏହା ଯେଉଁ ମୁଁ ବତାଇଲି କେବଳ ସେତିକି ନୁହେଁ, ଏହା ତ ବହୁତ ଗହନ କଥା ଅଟେ ! ଏମାନେ ତ ହିସାବ ହିଁ ନିଅନ୍ତି ଏବଂ ସୁଝି ଚାଲନ୍ତି ।

ଆତ୍ମା କାହାର ପୁଅ ହୁଏ ନାହିଁ ଆଉ ନା ହିଁ କାହାର ବାପ ହୁଏ । ଆତ୍ମା କାହାର ପତ୍ନୀ ହୁଏ ନାହିଁ, ନା ହିଁ କାହାର ପତି ହୁଏ । ଏମାନେ ସବୁ ଋଣାନୁବନ୍ଧ ଅଟନ୍ତି । କର୍ମର ଉଦୟରୁ ଏକତ୍ର ହୋଇଛନ୍ତି । ଏବେ (ଏହି ଜନ୍ମରେ) ଲୋକଙ୍କୁ ଏହି ପ୍ରତୀତି ହୁଏ । ଆମକୁ ମଧ୍ୟ ଏହି ପ୍ରତୀତି ହୋଇଛି ଆଉ ଏହା କେବଳ ପ୍ରତୀତି ହୁଏ, ବାସ୍ତବରେ ଦୃଶ୍ୟମାନ ବି ହୁଏ ନାହିଁ । ବାସ୍ତବିକ ହୁଅନ୍ତା ନା, ତେବେ କେହି ଲଢ଼ନ୍ତେ ହିଁ ନାହିଁ । ଏଠି ତ ଗୋଟିଏ ଘଣ୍ଟାରେ ହିଁ ଝାମେଲା ହୋଇଯାଏ, ମତଭେଦ ହୋଇଯାଏ, ସେତେବେଳେ ଲଢ଼ି ପଡ଼ନ୍ତି ନା ନାହିଁ ? 'ମୋର-ତୋର' କରନ୍ତି ନା ନାହିଁ ?

**ପ୍ରଶ୍ନକର୍ତ୍ତା :** କରନ୍ତି ।

**ଦାଦାଶ୍ରୀ :** ଏଣୁ କେବଳ ଆଭାସ ଅଛି, 'ଏକଜାକ୍ଟ' (ବାସ୍ତବିକ) ନାହିଁ ।

କଳିଯୁଗରେ ଆଶା ରଖିବ ନାହିଁ । କଳିଯୁଗରେ ଆତ୍ମାର କଲ୍ୟାଣ ହେଉ ଏପରି କର, ନଚେତ ସମୟ ବହୁତ ବିଚିତ୍ର ଆସୁଅଛି, ଆଗକୁ ଭୟାବହ ବିଚିତ୍ର ସମୟ ଆସୁଅଛି । ଏବେପରଠାରୁ ହଜାର ବର୍ଷ ଭଲ ଅଛି, କିନ୍ତୁ ତତ୍ପଶ୍ଚାତ ଭୟାବହ କାଳ ଆସିବାକୁ ଅଛି । ପୁଣି କେବେ ମଉକା ମିଳିବ ? ସେଥିପାଇଁ ଆମେ ଆତ୍ମାର୍ଥେ କିଛି କରିନେବା ।



# ପିଲାଙ୍କର ମାତା-ପିତାଙ୍କ ପ୍ରତି ବ୍ୟବହାର (ଉତ୍ତରାର୍ଦ୍ଧ)

## (୧୬) 'ଟିନେଜର୍ସ'(ଯୁବ ବୟସବାଲା)ଙ୍କ ସହ 'ଦାଦାଶ୍ରୀ'

**ପ୍ରଶ୍ନକର୍ତ୍ତା :** ଆଦର୍ଶ ବିଦ୍ୟାର୍ଥୀର ଜୀବନରେ କେଉଁ-କେଉଁ ଲକ୍ଷଣର ଆବଶ୍ୟକତା ଅଛି ?

**ଦାଦାଶ୍ରୀ :** ବିଦ୍ୟାର୍ଥୀକୁ ଘରର ଯେତେ ବ୍ୟକ୍ତି ଥିବେ, ସେ ସମସ୍ତଙ୍କୁ ଖୁସି ରଖିବାର ଆବଶ୍ୟକତା ଅଛି ଆଉ ପୁଣି ସ୍କୁଲରେ ଯେଉଁମାନଙ୍କ ସାଥି ଥିବ, ନିଜର ଯେଉଁ ଟିଚର ଥିବେ, ସେ ସମସ୍ତଙ୍କୁ ଖୁସି ରଖିବାର ଆବଶ୍ୟକତା ଅଛି । ଆମେ ଯେଉଁଠିକୁ ଯିବା ସେଠାରେ ସମସ୍ତଙ୍କୁ ଖୁସି ରଖିବା ଉଚିତ ଏବଂ ନିଜ ପଢ଼ାରେ ମଧ୍ୟ ଧ୍ୟାନ ଲଗାଇବା ଉଚିତ ।

ତୁମେ କେବେ ଜୀବଜନ୍ତୁ ମାରିଥିଲ ?

**ପ୍ରଶ୍ନକର୍ତ୍ତା :** ହଁ ।

**ଦାଦାଶ୍ରୀ :** କେଉଁଠି ମାରିଥିଲ ?

**ପ୍ରଶ୍ନକର୍ତ୍ତା :** ବଗିଚାରେ, ପଛ ଅଗଣାରେ ।

**ଦାଦାଶ୍ରୀ :** କେଉଁ ଜନ୍ତୁ ଥିଲା ? କକ୍ରୋଚ୍ ଇତ୍ୟାଦି ଥିଲେ ?

**ପ୍ରଶ୍ନକର୍ତ୍ତା :** ସମସ୍ତଙ୍କୁ ମାରିଥିଲି ।

**ଦାଦାଶ୍ରୀ :** ମଣିଷ ଛୁଆକୁ ମାରି ପକାଉଛୁ କି ?

**ପ୍ରଶ୍ନକର୍ତ୍ତା :** ନା ।

**ଦାଦାଶ୍ରୀ :** କାହାରି ଛୁଆକୁ ମାରନ୍ତି ନାହିଁ ? ଏ କାହାର ଛୁଆ ହୋଇଥିବ ତେବେ ମାରି ପାରିବା ନାହିଁ ?

**ପ୍ରଶ୍ନକର୍ତ୍ତା :** ନା ।

**ଦାଦାଶ୍ରୀ :** ଏପରି କାହିଁକି ? ଏବେ ତୁ ଯେଉଁ ଜୀବକୁ ମାରିଲୁ, ସେଭଳି ଗୋଟିଏ ତୁ ମୋତେ ତିଆରି କରି ଦେବୁ ? ଲକ୍ଷେ ଟଙ୍କା ପୁରସ୍କାର ଦେବି । ଯଦି କେହି ଗୋଟିଏ ଜୀବ ତିଆରି କରି ଦେବ ତେବେ ତା'କୁ ଲକ୍ଷେ ଟଙ୍କା ପୁରସ୍କାର ଦେବି । ତୁ କରିଦେବୁ ? ହେବ ନାହିଁ ?

**ପ୍ରଶ୍ନକର୍ତ୍ତା :** ନା ।

**ଦାଦାଶ୍ରୀ :** ତେବେ ପୁଣି ଆମେ କିପରି ମାରି ପାରିବା ? କ'ଣ ଏହି ଦୁନିଆରେ କେହି ଗୋଟିଏ ବି ଜୀବ ତିଆରି କରିପାରିବ ? ଏ ସାଇଣ୍ଟିଷ୍ଟ ତିଆରି କରି ପାରିବେ ?

**ପ୍ରଶ୍ନକର୍ତ୍ତା :** ନା ।

**ଦାଦାଶ୍ରୀ :** ତେବେ ପୁଣି ଯାହା ତିଆରି କରିପାରିବା ନାହିଁ, ତା'କୁ ଆମେ ମାରିପାରିବା ନାହିଁ । ଏ ଚୌକି ତିଆରି କରନ୍ତି, ଏ ସବୁ ଜିନିଷ ତିଆରି କରନ୍ତି, ତାହାର ନାଶ କରିପାରିବା । ତୋତେ ବୁଝାପଡ଼ିଲା ?

**ପ୍ରଶ୍ନକର୍ତ୍ତା :** ହଁ ।

**ଦାଦାଶ୍ରୀ :** ଏବେ କ'ଣ କରିବୁ ?

**ପ୍ରଶ୍ନକର୍ତ୍ତା :** କାହାକୁ ମାରିବି ନାହିଁ ।

**ଦାଦାଶ୍ରୀ :** ସେ ଜୀବକୁ କ'ଣ ମରିବାର ଡର ଲାଗେ ? ଆମେ ମାରିବାକୁ ଯାଉ ତେବେ କ'ଣ ସେ ଦୌଡ଼େ ?

**ପ୍ରଶ୍ନକର୍ତ୍ତା :** ହଁ ।

**ଦାଦାଶ୍ରୀ :** ତେବେ ପୁଣି କିପରି ମାରିପାରିବ ? ଆଉ ଏ ଗହମ, ବାଜରାକୁ ଭୟ ଲାଗେ ନାହିଁ, ତା'କୁ ଅସୁବିଧା ନାହିଁ, କ'ଣ ? ଗହମ, ବାଜରା, ଲାଉ ଏସବୁ ଦୌଡ଼ନ୍ତି କି ? ଆମେ ଚାକୁ ନେଇ ଯିବା ତେବେ କ'ଣ ଲାଉ ଦୌଡ଼ି ପଳାଏ ?

**ପ୍ରଶ୍ନକର୍ତ୍ତା :** ନା ।

**ଦାଦାଶ୍ରୀ :** ତେବେ ତାହାର ତରକାରୀ କରି ଖାଇ ପାରିବା । ତୋତେ ମରିବାର ଭୟ ଲାଗେ ନା ନାହିଁ ?

**ପ୍ରଶ୍ନକର୍ତ୍ତା :** ଲାଗେ ।

**ଦାଦାଶ୍ରୀ :** ହଁ, ତେବେ ଏଭଳି ତା'କୁ ମଧ୍ୟ ଲାଗେ ।

*ଅଣହକ୍କ*(ହକ୍କ ବିନା, ଅବୈଧ)ର ଗର୍ତ୍ତ ତ ବହୁତ ଗଭୀର ! ପୁଣି ଉପରକୁ ଆସି ହିଁ ପାରିବା ନାହିଁ । ଏଣୁ ସାବଧାନ ରହି ଚାଲିବା ଭଲ । ଏଣୁ ତୁ ସମ୍ଭାଳି ଯା । ଏବେ ତ ଜବାନୀ ଅଛି, ଯାହାକୁ ବୃଦ୍ଧାବସ୍ଥା ଆସିବାକୁ ଥିବ, ତାଙ୍କୁ ମୁଁ କିଛି କହେ ନାହିଁ । ଏ ଭୟ ସିଗ୍ନାଲ ତୋତେ ଦେଖାଉଛି ।

**ପ୍ରଶ୍ନକର୍ତ୍ତା :** ହଁ, ହଁ, ନେବି ନାହିଁ, ଅନ୍ୟର ସ୍ତ୍ରୀ ନେବି ନାହିଁ ।

**ଦାଦାଶ୍ରୀ :** ହଁ, ଠିକ ଅଛି । ନେଇଯିବାର ଭାବିବୁ ବି ନାହିଁ । କେଉଁ ସ୍ତ୍ରୀ ପ୍ରତି ଆକର୍ଷଣ ହେବ ତେବେ ମଧ୍ୟ 'ହେ ଦାଦା ଭଗବାନ ! ମୋତେ କ୍ଷମା କର' କହିବୁ ।

ପିଲାମାନଙ୍କ ପାଇଁ ମାତା-ପିତାଙ୍କୁ କ'ଣ କରିବା ଉଚିତ ? ପିଲାମାନେ ବାହାରେ କେଉଁଠି ମାନ ନ ଖୋଜନ୍ତୁ ଏପରି ରଖିବ । ସେମାନେ ମାନର ଭୋକିଲା ନ ହୁଅନ୍ତୁ ଏବଂ ବାହାରେ ମାନର ହୋଟେଲ ମାନଙ୍କରେ ଖାଇବାକୁ ନ ଯାଆନ୍ତୁ । ଏଥିପାଇଁ କ'ଣ କରିବ ? ଘରକୁ ଆସନ୍ତି ତେବେ ଏପରି ଡାକିବ, 'ପୁଅ, ତୁ ତ ବଡ଼ ହୁସିଆର ଅଟୁ, ଏମିତି ଅଟୁ, ସେମିତି ଅଟୁ,' ତା'କୁ ଟିକିଏ ସମ୍ମାନ ଦେବ ଅର୍ଥାତ ତା'ସହ ଫ୍ରେଣ୍ଡସିପ୍ (ମିତ୍ରତା) ଭଳି ଭାବ ରଖିବା ଉଚିତ । ତା' ସାଥିରେ ବସି ତା' ମୁଣ୍ଡରେ ହାତ ବୁଲାଇବ ଏବଂ କହିବ, 'ପୁଅ, ଚାଲ ଆମେ ଖାଇନେବା, ଆମେ ସାଥିରେ ଜଳଖିଆ କରିବା' ଏପରି ହେବା ଉଚିତ । ତେବେ ସେ ବାହାରେ ପ୍ରେମ ଖୋଜିବ ନାହିଁ । ମୁଁ ତ ପାଞ୍ଚ ବର୍ଷର ପିଲା ହୋଇଥିବ, ତା'ସହ ବି ପ୍ରେମ ରଖେ । ତା' ସହ ଫ୍ରେଣ୍ଡସିପ ରଖେ ।

**ପ୍ରଶ୍ନକର୍ତ୍ତା :** ପାପା ବା ମମ୍ମୀ ମୋ ଉପରେ ରାଗିବେ ତେବେ କ'ଣ କରିବି ?

**ଦାଦାଶ୍ରୀ :** 'ଜୟ ସଚ୍ଚିଦାନନ୍ଦ, ଜୟ ସଚ୍ଚିଦାନନ୍ଦ' କହିବ । ଏପରି କହିବ ନା, ତେବେ ସେ ଶାନ୍ତ ହୋଇଯିବେ ।

ପାପା, ମମ୍ମୀ ସହ ଝଗଡ଼ା କରିବାକୁ ଲାଗନ୍ତି, ତେବେ ପିଲାମାନେ ସବୁ 'ସଚ୍ଚିଦାନନ୍ଦ, ସଚ୍ଚିଦାନନ୍ଦ' କହିବେ ତେବେ ଏହାଦ୍ୱାରା ସବୁ ବନ୍ଦ ହୋଇଯିବ । ଦୁହେଁ ବିଚରା ଲାଜେଇ ଯିବେ ! ଭୟର ଏଲାର୍ମ ଟାଣିବା ତେବେ ତୁରନ୍ତ ବନ୍ଦ ହୋଇଯାଏ ।

ଏବେ ଘରର ସବୁ ଲୋକଙ୍କୁ ତୋ କାରଣରୁ ଆନନ୍ଦ ହେଉ, ଏପରି ରଖିବୁ । ତୋତେ ସେମାନଙ୍କ କାରଣରୁ ଦୁଃଖ ହୁଏ ତେବେ ତାହାର 'ସମଭାବରେ *ନିକାଲ୍*' କରିବୁ ଆଉ ତୋ ଦ୍ୱାରା ସେ ସମସ୍ତଙ୍କୁ ଆନନ୍ଦ ହେଉ ଏପରି ରଖିବୁ । ପରେ ସେମାନଙ୍କର ପ୍ରେମ ତୁ ଦେଖିବୁ, କିପରି ପ୍ରେମ ? ଏହା ତ ତୁ ପ୍ରେମ ବ୍ରେକଡାଉନ୍(ଭାଙ୍ଗି) କରି ପକାଉଛୁ । ସେମାନଙ୍କର ପ୍ରେମ ଥିବ ଆଉ ତା' ଉପରେ ତୁ ପଥର ପକେଇ ଚାଲିବୁ ତେବେ ସବୁ ପ୍ରେମ ଭାଙ୍ଗିଯିବ ।

**ପ୍ରଶ୍ନକର୍ତ୍ତା :** ବୟୋଜ୍ୟେଷ୍ଠ ହିଁ କାହିଁକି ବେଶୀ ଗରମ ହୋଇଯାନ୍ତି ?

**ଦାଦାଶ୍ରୀ :** ଏ ତ ଗାଡ଼ି ଦଦରା ହୋଇଗଲାଣି, ଗାଡ଼ି ପୁରୁଣା ହୋଇ ଯାଇଥିବ ତେବେ ସବୁଦିନ ଗରମ ହୋଇଯାଏ । ଯଦି ନୂଆ ଗାଡ଼ି ହୋଇଥିବ ତେବେ ଗରମ ହୁଏ ନାହିଁ । ଏଣୁ ଗୁରୁଜନ ବିଚରାଙ୍କୁ କ'ଣ... (ବୟସ ହେବା କାରଣରୁ ନୂଆ ପିଢ଼ି ସହ ଏଡ଼ଜଷ୍ଟମେଣ୍ଟ ନେଇପାରନ୍ତି ନାହିଁ ଏବଂ ଘର୍ଷଣ ହୋଇଚାଲିଥାଏ ।)

ଗାଡ଼ି ଗରମ ହୋଇଯାଏ ତେବେ କ'ଣ ଆମକୁ ଥଣ୍ଡା କରିବାକୁ ପଡ଼େ ନାହିଁ ? ବାହାରେ କାହା ସହିତ କିଛି ମଥା ଗରମ ହୋଇଯାଇଥିବ, ରାସ୍ତାରେ ପୁଲିସବାଲା ସହିତ, ତେବେ ଚେହେରା ଇମୋଶନାଲ(ଭାବୁକ) ହୋଇଯାଏ, ସେତେବେଳେ ତୁମେ ଚେହେରା ଦେଖିବ ତେବେ କ'ଣ କହିବ ? 'ତୁମକୁ ଯେତେବେଳେ ଦେଖ ସେତେବେଳେ ଫାଲୁଆ ମୁହଁ, ଚିନ୍ତାଗ୍ରସ୍ତ ।' ଏପରି କହିବା ଉଚିତ ନୁହେଁ । ଆମକୁ ବୁଝିନେବା ଉଚିତ ଯେ କୌଣସି ଅସୁବିଧାରେ ଅଛନ୍ତି । ଏଣୁ ପୁଣି ଆମେ ଏମିତି ହିଁ ଗାଡ଼ିକୁ ଥଣ୍ଡା କରିବା ପାଇଁ ଛିଡ଼ା କରାନ୍ତିନି କି ?

ବୟୋଜ୍ୟେଷ୍ଠଙ୍କ ସେବା କରିବା ତ ସବୁଠୁ ବଡ଼ ଧର୍ମ ଅଟେ । ଯୁବଗୋଷ୍ଠୀର ଧର୍ମ କ'ଣ ? ତେବେ କହିବା, ବୟୋଜ୍ୟେଷ୍ଠଙ୍କ ସେବା କରିବା । ପୁରୁଣା ଗାଡ଼ିକୁ ଠେଲି ନେଇଯିବା ଆଉ ତେବେଯାଇ ଆମେ ଯେବେ ବୁଢ଼ା ହୋଇଯିବା, ସେତେବେଳେ ଆମକୁ ମଧ୍ୟ ଠେଲିବା ବାଲା ମିଳିବେ । ଏହା ତ ଦେଇକରି ନେବାର ଅଛି । ଆମେ ବୃଦ୍ଧଙ୍କର ସେବା କରିବା ତେବେ ଆମର ସେବା କରିବାବାଲା ଆସି ମିଳିବେ ଆଉ ଆମେ ବୃଦ୍ଧଙ୍କୁ ଧମକେଇ ବୁଲୁଥିବା ତେବେ ଆମକୁ ଧମକେଇବା ବାଲା ଆସି ମିଳିବେ । ପରେ ତୁମକୁ ଯାହା କରିବାକୁ ଥିବ, କରିବା ପାଇଁ ଛାଡ଼ ଅଛି ।

## (୧୭) ପତ୍ନୀର ଚୟନ

ଯେଉଁ ଯୋଜନା ହୋଇସାରିଛି, ସେଥିରେ କୌଣସି ପରିବର୍ତ୍ତନ ହେବାର ନାହିଁ ! ଯେଉଁ ବିବାହ କରିବାର ଯୋଜନା ହୋଇଛି ଆଉ ଏବେ ଆମେ ସ୍ଥିର କରିବା ଯେ ମୋତେ ବିବାହ କରିବାର ନାହିଁ ତେବେ ତାହା ଅର୍ଥହୀନ କଥା ଅଟେ । ସେଥିରେ ତୁମର କିଛି ଚାଲିବ ନାହିଁ ଆଉ ବିବାହ ତ କରିବାକୁ ହିଁ ପଡ଼ିବ ।

**ପ୍ରଶ୍ନକର୍ତ୍ତା :** ଏହି ଜନ୍ମରେ ଆମେ ଯେଉଁ ଭାବନା କରିଥିବୁ, ତାହା ଆସନ୍ତା ଜନ୍ମରେ ଫଳିବ ନା ?

**ଦାଦାଶ୍ରୀ :** ହଁ, ଏହି ଜନ୍ମରେ ଭାବନା କରିବା ତେବେ ଆସନ୍ତା ଜନ୍ମରେ ଫଳେ । କିନ୍ତୁ ଏବେ ତ ସେଥିରୁ ବଞ୍ଚି ପାରିବା ହିଁ ନାହିଁ ! ବର୍ତ୍ତମାନ ସେଥିରେ କାହାର

ଚାଲେ ନାହିଁ ନା ! ଭଗବାନ ବି ରୋକିବା ପାଇଁ ଯିବେ ଯେ ବିବାହ କରନାହିଁ, ତେବେ ଭଗବାନଙ୍କର ମଧ୍ୟ ସେଠାରେ ଚାଲିବ ନାହିଁ ! ପୂର୍ବଜନ୍ମରେ ବିବାହ କରିବାର ଯୋଜନା କରି ହିଁ ନାହିଁ, ସେଥିପାଇଁ ବିବାହର ସଂଯୋଗ ଆସେ ନାହିଁ । ଯାହା ଯୋଜନା କରିଥିବ ତାହା ହିଁ ଆସିବ ।

ଯେପରି ପାଇଖାନା ଯିବା ବିନା କାହାରିକୁ ଚଳେ ନାହିଁ, ସେହିପରି ବାହାହେବା ବିନା ମଧ୍ୟ ଚଳେ ନାହିଁ ! ତୋ ମନ କୁଆଁରା ଅଟେ, ତେବେ ଅସୁବିଧା ନାହିଁ । କିନ୍ତୁ ଯେଉଁଠି ମନ ବାହା-ଶାହାବାଲା ଅଟେ, ସେଠି ବାହାହେବା ବିନା ଚଳେ ନାହିଁ ଏବଂ କାହାର ସାହାରା ବିନା ମନୁଷ୍ୟ ରହିପାରିବ ନାହିଁ । ସାହାରା ବିନା କିଏ ରହିପାରିବ ? କେବଳ 'ଜ୍ଞାନୀପୁରୁଷ' । ଯେଉଁଠି ଅନ୍ୟ କେହି ନଥିବେ, ସେଠି ମଧ୍ୟ । କାହିଁକିନା ନିଜେ ନିରାଲମ୍ବ ହୋଇଛନ୍ତି । କୌଣସି ଅବଲମ୍ବନର ତାଙ୍କୁ ଆବଶ୍ୟକତା ହିଁ ନାହିଁ ।

ମନୁଷ୍ୟ ବିଚରା ବିନା ସାହାରାରେ ରହିପାରିବ ନାହିଁ । କୋଡ଼ିଏ ଲକ୍ଷ ଟଙ୍କାର ବଡ଼ ବଙ୍ଗଳା ହୋଇଥିବ ଆଉ ରାତି ଏକୁଟିଆ ଶୋଇବା ପାଇଁ କୁହାଯାଏ ତେବେ ? ତା'କୁ ସାହାରା ଦରକାର । ମନୁଷ୍ୟଙ୍କୁ ସାହାରା ଦରକାର, ସେଥିପାଇଁ ତ ବାହା ହୁଅନ୍ତି ନା ! ବିବାହର ପ୍ରଣାଳୀ କିଛି ଭୁଲ ନୁହେଁ । ଏହା ତ ପ୍ରକୃତିର ନିୟମ ଅଟେ ।

ଏଣୁ ବାହା ହେବାରେ ସହଜ ପ୍ରୟାସ ରଖିବ, ମନରେ ଭାବନା ରଖିବ ଯେ ଭଲ ଜାଗାରେ ବାହା ହେବାର ଅଛି, ପୁଣି ସେ ଷ୍ଟେସନ ଆସିଲେ ଓହ୍ଲେଇ ଯିବ । ଷ୍ଟେସନ ଆସିବା ପୂର୍ବରୁ ଦୌଡ଼-ଧାପଡ଼ କରିବା ତେବେ କ'ଣ ହେବ ? ତୋତେ ପୂର୍ବରୁ ଦୌଡ଼-ଧାପଡ଼ କରିବାର ଅଛି ?

**ପ୍ରଶ୍ନକର୍ତ୍ତା :** ନା, ଷ୍ଟେସନ ଆସିଲେ ।

**ଦାଦାଶ୍ରୀ :** ହଁ, ଷ୍ଟେସନକୁ ଆମର ଗରଜ ଅଛି ଆଉ ଆମକୁ ଷ୍ଟେସନର ଗରଜ ଅଛି । 'ମୋତେ' ଏକୁଟିଆ ହିଁ ଷ୍ଟେସନର ଗରଜ ନାହିଁ । ଷ୍ଟେସନକୁ ବି ମୋର ଗରଜ ଅଛି ନା ନାହିଁ ?

**ପ୍ରଶ୍ନକର୍ତ୍ତା :** ଆପଣଙ୍କ ସଂଘରେ ସମ୍ମିଳିତ ହେଉଥିବା ଯୁବକ-ଯୁବତୀମାନେ ବାହାହେବା ପାଇଁ ମନା କରନ୍ତି, ତେବେ ଆପଣ ସେମାନଙ୍କୁ ଏକାନ୍ତରେ କି ଉପଦେଶ ଦିଅନ୍ତି ?

**ଦାଦାଶ୍ରୀ :** ମୁଁ ଏକାନ୍ତରେ ସେମାନଙ୍କୁ ବାହାହେବା ପାଇଁ କହିଦିଏ ଯେ ଭାଇ, ତୁମେ ବାହାହେବ ତେବେ ଅଳ୍ପ-ବହୁତ ଝିଅ ଠିକଣାରେ ଲାଗିଯିବେ । ମୋତେ

ତ ତୁମେ ବାହାହୋଇ ଆସିଲେ ମଧ୍ୟ କିଛି ଅସୁବିଧା ନାହିଁ । ଏ ଆମର ମୋକ୍ଷମାର୍ଗ ବାହା-ଶାହା ହୋଇଥିବା ଲୋକଙ୍କ ପାଇଁ ଅଟେ । ମୁଁ ତ ତାଙ୍କୁ କହେ ଯେ ବାହା ହୋଇଯାଅ ଫଳରେ ଝିଅ କିଛି କମିବେ । ଆଉ ବାହା ହେଲେ ଏଠି ମୋକ୍ଷ ଅଟକି ଯିବ ଏପରି ନୁହେଁ ।

କିନ୍ତୁ ସେମାନେ କ'ଣ ସନ୍ଧାନ କଲେ ଯେ ବାହା ହେବାଦ୍ୱାରା ବହୁତ ଝଂଝଟ୍ ହୁଏ । ସେମାନେ କହନ୍ତି, 'ଆମେ ଆମର ମାତା ପିତାଙ୍କ ସୁଖ( !) ଦେଖିଛୁ । ଏଣୁ ସେ ସୁଖ( !) ଆମକୁ ଭଲ ଲାଗୁନାହିଁ ।' ଅର୍ଥାତ ସେମାନେ ହିଁ ମାତା-ପିତାଙ୍କ ସୁଖର ପ୍ରମାଣ ଦିଅନ୍ତି । ଆଜିକାଲି ମାତା-ପିତାଙ୍କ ଲଢ଼େଇ-ଝଗଡ଼ା ପିଲାମାନେ ଘରେ ଦେଖନ୍ତି ଏବଂ ସେଥିରୁ ବିରକ୍ତ ହୋଇସାରିଥାନ୍ତି ।

ପୁଅ ଉପରେ ଚାପ ପକାଇବ ନାହିଁ ନହେଲେ ତୁମ ମୁଣ୍ଡକୁ ଆସିବ ଯେ ମୋ ବାପା ବିଗାଡ଼ିଲେ । ତାଙ୍କୁ ଚଳାଇବା ଆସେ ନାହିଁ ସେଥିପାଇଁ ବିଗିଡ଼େ ଏବଂ ନାମ ଆମର ଆସେ ।

ତା'କୁ ପାଖକୁ ଡାକି କହିବ, 'ଆମକୁ ଝିଅ ପସନ୍ଦ ଆସିଛି, ଏବେ ତୋତେ ପସନ୍ଦ ହେଉଛି ତେବେ କହ ଆଉ ପସନ୍ଦ ହେଉନାହିଁ, ତେବେ ଆମେ ରହିବାକୁ ଦେବା ।' ସେତେବେଳେ ଯଦି ସେ କୁହେ, 'ମୋତେ ପସନ୍ଦ ନାହିଁ', ତେବେ ତା'କୁ ରହିବାକୁ ଦିଅ । ପୁଅ ପାଖରୁ ସ୍ୱୀକୃତି ଅବଶ୍ୟ କରାଇବ, ନଚେତ ପୁଅ ମଧ୍ୟ ବିରୁଦ୍ଧ ହୋଇଯିବ ।

**ପ୍ରଶ୍ନକର୍ତ୍ତା :** ଏ ଲଭ୍ ମ୍ୟାରେଜ ପାପ ଗଣାଯାଏ ?

**ଦାଦାଶ୍ରୀ :** ନା, ଟେମ୍ପରାରୀ ଲଭ୍ ମ୍ୟାରେଜ ହେବ ତେବେ ପାପ ଗଣାଯିବ । ପରମାନେଣ୍ଟ ଲଭ୍ ମ୍ୟାରେଜ ହେବ ତେବେ ପାପ ନୁହେଁ । ଅର୍ଥାତ ଲାଇଫ୍ ଲଙ୍ଗ୍ ଲଭ୍ ମ୍ୟାରେଜରେ ଅସୁବିଧା ନାହିଁ । ଟେମ୍ପରାରୀ ଲଭ୍ ମ୍ୟାରେଜ ଅର୍ଥାତ ବର୍ଷେ-ଦୁଇବର୍ଷ ପାଇଁ । ବାହା ହେବାର ଥିବ ତେବେ ଜଣକୁ ହିଁ ବାହାହେବା ଉଚିତ । ପତ୍ନୀ ବ୍ୟତୀତ ଅନ୍ୟ କାହା ସହିତ ଫ୍ରେଣ୍ଡସିପ ବହୁତ ନକରିବା ଉଚିତ । ଅନ୍ୟଥା ନର୍କରେ ଯିବାକୁ ପଡ଼ିବ ।

ପ୍ରଥମେ ଯେତେବେଳେ ବାପ କହିଲା ଯେ, 'ଏ ଲଫଡ଼ା କ'ଣ ଆରମ୍ଭ କଲୁଣି ?' ସେତେବେଳେ ପୁଅ ଓଲଟା-ସିଧା କହିଦେଲା । ଏଣୁ ତା' ବାପ ବୁଝିଲା ଯେ 'ତା'କୁ ନିଜକୁ ନିଜେ ଅନୁଭବ ହେବାକୁ ଦିଅ ! ଆମ ଅନୁଭବ ନେବାକୁ ପ୍ରସ୍ତୁତ ନାହିଁ । ତେବେ ତା'କୁ ନିଜ ଅନୁଭବ ହେବାକୁ ଦିଅ ।' ସେ ତା'କୁ ଅନ୍ୟ ସହ ଦେଖିବ

ନା! ସେତେବେଳେ ଅନୁଭବ ହେବ! ସେତେବେଳେ ଅନୁତାପ କରିବ ଯେ ବାପା କହୁଥିଲେ, ତାହା ସତ କଥା । ଏହା ତ ଲଫଡ଼ା ହିଁ ଅଟେ ।

**ପ୍ରଶ୍ନକର୍ତ୍ତା :** ମୋହ ଏବଂ ପ୍ରେମର ଭେଦରେଖା କ'ଣ ?

**ଦାଦାଶ୍ରୀ :** ଏ ପତଙ୍ଗ ଥାଏ ନା ? ପତଙ୍ଗ ଦୀପ ପଛରେ ପଡ଼ି 'ସ୍ୱାହା' ହୋଇଯାଏ ନା ? ସେ ନିଜ ଜୀବନ ଖତମ କରିଦିଏ । ଏହା 'ମୋହ' କୁହାଯାଏ । ଯେବେକି ପ୍ରେମ ସର୍ବଦା ତିଷ୍ଠେ, ତଥାପି ସେଥିରେ ମଧ୍ୟ ଅଳ୍ପ ଆସକ୍ତିର ଯନ୍ତ୍ରଣା ହୁଏ । ଯେଉଁ ମୋହ ହୁଏ, ତାହା ସ୍ଥାୟୀ ନୁହେଁ ।

ଏଠି ବାର ମାସ ଯାଏଁ ଏତିକି ଛୋଟ ଫୋଟକା ହୋଇଯାଏ ନା, ତେବେ ମୁହଁ ବି ଦେଖେ ନାହିଁ, ମୋହ ଚାଲିଯାଏ । ଯଦି ସଚ୍ଚା ପ୍ରେମ ଥିବ ତେବେ ଗୋଟିଏ ଫୋଟକା ତ କ'ଣ, ଦୁଇଟି ଫୋଟକା ହେବ ତେବେ ମଧ୍ୟ ପ୍ରେମ ଯାଏ ନାହିଁ । ସେଥିପାଇଁ ଏଭଳି ପ୍ରେମ ଖୋଜି ବାହାର କର । ନଚେତ ବାହା ହିଁ ହୁଅ ନାହିଁ । ନହେଲେ ଫଶିଯିବ । ସେ ମୁହଁ ଚଢ଼େଇବ ତେବେ କହିବ, 'ମୋତେ ସ୍ୱା ମୁହଁ ଦେଖିବାକୁ ଭଲ ଲାଗୁନାହିଁ ।' ଯେତେବେଳେ ଦେଖିଥିଲୁ ସେତେବେଳେ ତୋତେ ଭଲ ଲାଗିଥିଲା, ସେଥିପାଇଁ ତ ତୋତେ ପସନ୍ଦ ଆସିଥିଲା ଆଉ ଏବେ ଏ ପସନ୍ଦ ନାହିଁ ? ଏ ତ ମିଠା କହୁଥିବ, ସେପର୍ଯ୍ୟନ୍ତ ପସନ୍ଦ ଆସେ ଆଉ କଠୋର(କର୍କଶ) କହେ, ତେବେ କୁହେ 'ମୋତେ ତୋ ସହ ଭଲ ଲାଗୁନାହିଁ ।'

**ପ୍ରଶ୍ନକର୍ତ୍ତା :** 'ଡେଟିଙ୍ଗ୍' ଆରମ୍ଭ ହୋଇ ଯାଇଥିବ, ପରେ ଏବେ ତାହା କିପରି ବନ୍ଦ କରିବୁ ?

**ଦାଦାଶ୍ରୀ :** ବନ୍ଦ କରିଦିଅ । ଏହି କ୍ଷଣି ସ୍ଥିର କର ଯେ ଏହା ବନ୍ଦ କରିଦେବାର ଅଛି । ମୁଁ କୁହେ ଯେ ଏଠି ତୁ ଛଳନାର ଶିକାର ହେଉଛୁ, ତେବେ ପୁଣି ଛଳନାର ଶିକାର ହେବା ବନ୍ଦ କରିଦିଏ । ନୂଆ ରୂପରେ(ଏବେଠାରୁ) ଛଳନାର ଶିକାର ହେବା ବନ୍ଦ । ଯେତେବେଳେ ଉଠିଲେ ସେତେବେଳେ ସକାଳ । ଯେବେ ବୁଝାପଡ଼ିଲା ଯେ ଏହା ଠିକ ହେଉନାହିଁ ତେବେ ବନ୍ଦ କରିଦେବା ଉଚିତ ।

ୱାଇଲ୍ଡ ଲାଇଫ (ଅସଂସ୍କୃତ ଜୀବନ) ନହେବା ଉଚିତ, ଇଣ୍ଡିୟନ ଲାଇଫ (ସଂସ୍କୃତ ଜୀବନ) ହେବା ଉଚିତ ।

ତୁମେ ଭଲ ଥିବ ତେବେ ତୁମକୁ ପତ୍ନୀ ମଧ୍ୟ ଭଲ ମିଳିବ । ତାହା 'ବ୍ୟବସ୍ଥିତ', ଯାହା ଏକଜାକ୍ଟ ହୁଏ ।

**ପ୍ରଶ୍ନକର୍ତ୍ତା :** କୌଣସି ବି ଝିଅ ଚଳିବ । ମୁଁ କଲର-ବଲରରେ ମାନେ ନାହିଁ । ଯେଉଁ ଝିଅ ଭଲ ହୋଇଥିବ, ଆମେରିକାନ ହେଉ ଅବା ଇଣ୍ଡିୟନ, ତେବେ ମଧ୍ୟ ଅସୁବିଧା ନାହିଁ ।

**ଦାଦାଶ୍ରୀ :** କିନ୍ତୁ ଏପରି ଅଟେ ଯେ, ଏହି ଆମେରିକାନ ଆମ୍ବ ଆଉ ଆମ ଆମ୍ବ ଭିତରେ ଫରକ ଥାଏ, ଏହା ତୁ ଜାଣି ନାହୁଁ? କ'ଣ ଫରକ ଥାଏ ଆମ ଆମ୍ବରେ ?

**ପ୍ରଶ୍ନକର୍ତ୍ତା :** ଆମର ମିଠା ହୋଇଥାନ୍ତି ।

**ଦାଦାଶ୍ରୀ :** ହଁ, ତେବେ ପୁଣି ଦେଖ ନା । ସେ ମିଠା ଚାଖିକରି ତ ଦେଖ, ଆମ ଇଣ୍ଡିୟାର ।

**ପ୍ରଶ୍ନକର୍ତ୍ତା :** ଏବେ ଚାଖି ନାହିଁ ।

**ଦାଦାଶ୍ରୀ :** ନା, କିନ୍ତୁ ଏଥିରେ ଫଶିବ ନାହିଁ! ଆମେରିକାନରେ ଫଶିବା ଭଳି ନୁହେଁ । ଦେଖ, ତୋ ମମ୍ମୀ ଏବଂ ପାପାଙ୍କୁ ତୁ ଦେଖିଛୁ ନା ? ସେମାନଙ୍କ ମଧ୍ୟରେ କେବେ ମତଭେଦ ହୁଏ ନା ହୁଏନାହିଁ ?

**ପ୍ରଶ୍ନକର୍ତ୍ତା :** ମତଭେଦ ତ ହୁଏ ।

**ଦାଦାଶ୍ରୀ :** ହଁ, କିନ୍ତୁ ସେହି ସମୟରେ ତୋ ମମ୍ମୀ ଘର ଛାଡ଼ି ଚାଲିଯାଏ କେବେ ?

**ପ୍ରଶ୍ନକର୍ତ୍ତା :** ନା, ନା ।

**ଦାଦାଶ୍ରୀ :** ଆଉ ସେ ଆମେରିକାନ ତ 'ୟୁ ୟୁ' କରି ଏମିତି ବନ୍ଧୁକ ଦେଖାଇ ଚାଲିଯାଏ ଆଉ ଏ ତ ସାରା ଜୀବନ ରହେ । ସେଥିପାଇଁ ମୁଁ ତୋତେ ବୁଝାଉଛି ଯେ ଭାଇ, ଏପରି କରିବ ନାହିଁ, ଏ ପଟକୁ ବୁଲିବା ପରେ ଅନୁତାପ କରିବ । ଏହି ଇଣ୍ଡିୟନ ତ ଶେଷ ପର୍ଯ୍ୟନ୍ତ ସାଥିରେ ରହେ, ହଁ... ରାତି ଝଗଡ଼ା କରି ସକାଳ ପର୍ଯ୍ୟନ୍ତ ରିପେୟର ହୋଇଯାଏ ।

**ପ୍ରଶ୍ନକର୍ତ୍ତା :** ଠିକ କଥା ।

**ଦାଦାଶ୍ରୀ :** ସେଥିପାଇଁ ଏବେ ସ୍ଥିର କରି ନେ ଯେ ମୋତେ ଭାରତୀୟ ଝିଅ ସହ ବାହା ହେବାର ଅଛି । ଇଣ୍ଡିୟନ ମଧ୍ୟରେ ତୋତେ ଯାହା ପସନ୍ଦ ଆସେ ତାହା, ବ୍ରାହ୍ମଣ, ବୈଶ୍ୟ ଯାହା ତୋତେ ଠିକ ଲାଗେ, ସେଥିରେ ଅସୁବିଧା ନାହିଁ ।

**ପ୍ରଶ୍ନକର୍ତ୍ତା :** ନିଜ ସମ୍ପ୍ରଦାୟରେ ହିଁ ବାହା ହେବାରେ କ'ଣ ଲାଭ ଅଛି, ଏହା ଟିକିଏ ବତାନ୍ତୁ ।

**ଦାଦାଶ୍ରୀ :** ନିଜ କମ୍ୟୁନିଟୀର ପତ୍ନୀ ହେବ ତେବେ ତୁମ ସ୍ୱଭାବକୁ ଅନୁକୂଳ ହେବ । କଂସାର (ଏକ ପ୍ରକାର ଗୁଜରାଟୀ ମିଠାଇ) ପରଷିଥିବ ତେବେ ତୁମକୁ ଘିଅ ଅଧିକ ଦରକାର । ଯଦି କିଛି ଏମିତି ଜାତିର ଝିଅ ଆଣିବ, ତେବେ ସେ ପରଷିବ ନାହିଁ, ଏମିତି ତଳୁଆ ହାତ କରି ଦେବାରେ ହିଁ ତା' ହାତ ବିନ୍ଧିବ । ଏଣୁ ତା'ର ଭିନ୍ନ ସ୍ୱଭାବ ସହିତ ସାରାଦିନ ଘର୍ଷଣ ହୋଇଚାଲିବ ଆଉ ନିଜ ଜାତିବାଲି ସହ ଏପରି କିଛି ହେବ ନାହିଁ । ବୁଝି ପାରିଲ ନା ? ସେ (ଅନ୍ୟ ଜାତିର ଝିଅ) ତ କଥା କହିବ ନା, ତାହା ମଧ୍ୟ ଚିପି ଚିପି କହିବ ଆଉ ଆମର ଦୋଷ ବାହାର କରେ ଯେ 'ତୁମକୁ କଥା କହିବା ଆସୁନାହିଁ' । ତା' ତୁଳନାରେ ଆମର ଭଲ ଯେ କିଛି କହିବ ତ ନାହିଁ, ଗାଳି ତ କରିବ ନାହିଁ ।

**ପ୍ରଶ୍ନକର୍ତ୍ତା :** ଆପଣ କହୁଛନ୍ତି ଯେ ନିଜ ଜାତିର ହୋଇଥିବ ସେଠି ଝଗଡ଼ା ହୁଏ ନାହିଁ, କିନ୍ତୁ ନିଜ ଜାତିର ହୋଇଥିବ, ସେଠାରେ ବି ଝଗଡ଼ା ହୁଏ, ଏହାର କ'ଣ କାରଣ ?

**ଦାଦାଶ୍ରୀ :** ଝଗଡ଼ା ହୁଏ ମାତ୍ର ତାହାର ସମାଧାନ ହୋଇଯାଏ । ତା' ସହ ଦିନସାରା ଭଲ ଲାଗେ ଆଉ ଅନ୍ୟ ସହ ଭଲ ଲାଗେ ନାହିଁ । ଘଣ୍ଟେ-ଅଧେ ଭଲ ଲାଗେ ଏବଂ ପୁଣି ବିରକ୍ତ ହୋଇଯାନ୍ତି । ସେ ଆସେ ଏବଂ ବିରକ୍ତିଜନକ ଲାଗେ । ନିଜ ଜାତିର ହୋଇଥିବ ତେବେ ପସନ୍ଦ ଆସେ, ନହେଲେ ପସନ୍ଦ ହିଁ ଆସେ ନାହିଁ । ଏମାନେ ସବୁ ଯେଉଁ ଅନୁତାପ କରିଛନ୍ତି, ସେମାନଙ୍କ ଉଦାହରଣ ବତାଉଛି । ଏସବୁ ଲୋକେ ଦୟନୀୟଭାବେ ଫଁଶି ଯାଇଥିଲେ । ଏବେ ତ ଅନ୍ୟ ଜାତିରେ ବାହା ହେବାରେ ଅସୁବିଧା ନାହିଁ, ଆଗରୁ ଟିକିଏ ଅସୁବିଧା ଥିଲା ।

**ପ୍ରଶ୍ନକର୍ତ୍ତା :** ଆମ ହାତରେ କେଉଁଠି ଅଛି ? ଆମ ହାତରେ ନାହିଁ ନା, ଆମେରିକାନ ପତ୍ନୀ ଆସିବ କି ନାହିଁ ?

**ଦାଦାଶ୍ରୀ :** ହାତରେ ନାହିଁ, ତଥାପି ଏମିତି ଉପେକ୍ଷା କ'ଣ କରିପାରିବା ? କହିବାକୁ ତ ପଡ଼ିବ ନା, 'ଏ ! ସେ ଆମେରିକାନ ଝିଅ ସହ ତୁ ବୁଲିବୁନି ! ଆମ କାମ ନୁହେଁ !' ଏମିତି କହୁଥିବା ତେବେ ଆପେ ଆପେ ପ୍ରଭାବ ହେବ । ନହେଲେ ସେ ବୁଝିବ ଯେ ଯା ସହ ବୁଲୁଛେ, ସେହିପରି ତା' ସହିତ ମଧ୍ୟ ବୁଲିବା । କହିବାରେ କ'ଣ

ଅସୁବିଧା ଅଛି ? କେଉଁ ଖରାପ ଅଞ୍ଚଳ ହୋଇଥିବ, ତେବେ ସେଠି ବୋର୍ଡ଼ ଲଗାନ୍ତି, 'ବିୱେୟର ଅଫ ଥିଭ୍‌ସ' (ଚୋରଙ୍କଠାରୁ ସାବଧାନ) ଏପରି କାହିଁକି କରନ୍ତି ? ନା ଯାହାକୁ ଚେତିବାର ଥିବ ସେମାନେ ଚେତନ୍ତୁ । ଏ ଶବ୍ଦ, କାମରେ ଆସେ ନା ଆସେନି ?

ପିତୃପକ୍ଷ କୂଳ କୁହାଯାଏ ଏବଂ ମାତୃପକ୍ଷକୁ ଜାତି କୁହନ୍ତି । ଜାତି କୂଳର ମିଶ୍ରଣ ହେବ ତେବେ ସଂସ୍କାର ଆସେ । କେବଳ ଜାତି ଥିବ ଆଉ କୂଳ ନଥିବ ତେବେ ମଧ୍ୟ ସଂସ୍କାର ହୁଏ ନାହିଁ । କେବଳ କୂଳ ଥିବ, ଜାତି ନଥିବ ତେବେ ମଧ୍ୟ ସଂସ୍କାର ହୁଏ ନାହିଁ । ଜାତି ଏବଂ କୂଳ ଉଭୟର ମିଶ୍ରଣ, ଏକଜାକ୍ଟନେସ ହେବ ତେବେଯାଇ ସଂସ୍କାରୀ ଲୋକ ଜନ୍ମ ନିଅନ୍ତି । ଏ ଉଭୟ ପକ୍ଷ ଭଲ ଜମା ହୋଇଥିବ ତେବେ କଥା ଆଗକୁ ବଢ଼ାଇବ, ଅନ୍ୟ ସବୁ କଥାରେ କିଛି ନାହିଁ ।

ଅତଃ ମାତା ଜାତିବାନ ହେବା ଉଚିତ ଏବଂ ପିତା କୂଳବାନ ହେବା ଉଚିତ । ତାଙ୍କ ସନ୍ତାନ ବହୁତ ଉତ୍ତମ ହେବେ । ଜାତିରେ ବିପରୀତ (ମନ୍ଦ) ଗୁଣ ନଥାଏ ଏବଂ ପିତାଙ୍କଠାରେ କୂଳବାନ ପ୍ରକାର ଗୁଣ ଥାଏ । କୂଳବାଲା ଆରାମରେ ଅନ୍ୟପାଇଁ ଘଷି ହୋଇଯାନ୍ତି (ନିଜପାଇଁ ବିଚାର ନକରି ଅନ୍ୟପାଇଁ କାମ କରିବା) । ଲୋକଙ୍କ ପାଇଁ ନିଜେ ଘଷି ହୋଇଯାନ୍ତି । ବହୁତ ଉଚ୍ଚା କୂଳବାନ କିଏ?, ଉଭୟ ପାର୍ଶ୍ୱରୁ କ୍ଷତି ସହେ । ଆସିବା ସମୟରେ ବି ଖର୍ଚ୍ଚ କରେ ଏବଂ ଯିବା ସମୟରେ ବି ଖର୍ଚ୍ଚ କରେ । ନହେଲେ ସଂସାରର ଲୋକେ କିପରି କୂଳବାନ ? ନେବା ସମୟରେ ପୁରା ନିଅନ୍ତି କିନ୍ତୁ ଦେବା ସମୟରେ ସାମାନ୍ୟ ବେଶୀ ଦିଅନ୍ତି, କିଛି ଭରି ବେଶୀ । ଲୋକେ ଚାଳିଶ ଭରି ଦେବେ, କିନ୍ତୁ ନିଜେ ଏକଚାଳିଶ ଭରି ଦିଏ । ଡବଲ କୂଳବାନ କିଏ ? ନିଜେ ଅଣଚାଳିଶ ଭରି ନିଏ, ଏକଭରି ସେଠାରୁ କମ ନିଏ ଏବଂ ଦେବା ସମୟରେ ଏକ ଭରି ବେଶୀ ଦିଏ, ସେ ଡବଲ କୂଳବାନ କୁହାଯାଏ । ଉଭୟ ପକ୍ଷରୁ କ୍ଷତି ଉଠାନ୍ତି ଅର୍ଥାତ ସେଠି କମ କ'ଣ ପାଇଁ ନିଅନ୍ତି ? ସେ ତାଙ୍କର ଜାତିବାଲା ଦୁଃଖୀ ଅଟେ, ତା' ଦୁଃଖ ଦୂର କରିବା ପାଇଁ ! ଏଠି ବି ଭଲ ଭାବନା, ସେଠି ବି ଭଲ ଭାବନା । ମୁଁ ଏଭଳି ଲୋକଙ୍କୁ ଦେଖୁଥିଲି, ତେବେ କ'ଣ କହୁଥିଲି, ଏ ଦ୍ୱାପରଯୁଗୀ ଆସିଲେ ।

ଏବେ ଉଚ୍ଚ କୂଳ ହୋଇଥିବ ଏବଂ କୂଳର ଅହଂକାର କରେ, ତେବେ ଆର ଥରକୁ ତା'କୁ ନିମ୍ନ କୂଳ ମିଳେ ଏବଂ ନମ୍ରତା ରଖେ ତେବେ ଉଚ୍ଚ କୂଳକୁ ଯାଏ । ଏହା ନିଜର ହିଁ ଶିକ୍ଷା ଅଟେ, ନିଜର ହିଁ ଫସଲ ଅଟେ । ସେ ଗୁଣ ପ୍ରାପ୍ତ କରିବାକୁ ପଡ଼େ ନାହିଁ, ସହଜ ରୂପରେ ପ୍ରାପ୍ତ ହୋଇଯାଏ । ସେଠି ଉଚ୍ଚ କୂଳରେ ଜନ୍ମ ହେବାଦ୍ୱାରା, ଜନ୍ମରୁ ହିଁ ସବୁ ଭଲ ସଂସ୍କାର ପ୍ରାପ୍ତ ହୁଏ ।

ଏ ସବୁ ବ୍ୟବହାରରେ କାମର କଥା । ଏହା ଜ୍ଞାନର କଥା ନୁହେଁ । କିନ୍ତୁ ବ୍ୟବହାରରେ, ବ୍ୟବହାର ଦରକାର ନା ! ?

**ପ୍ରଶ୍ନକର୍ତ୍ତା :** ଦାଦାଜୀ, ଆପଣ ଠିକ କହିଛନ୍ତି । ଜ୍ଞାନର ଶିଖର ଯାଏଁ ପହଞ୍ଚିବା ପର୍ଯ୍ୟନ୍ତ ଆମେ ବ୍ୟବହାରରେ ଅଛେ, ତେବେ ବ୍ୟବହାରରେ ଏ ଜ୍ଞାନର କଥା ବି କାମରେ ଆସେ ନା ?

**ଦାଦାଶ୍ରୀ :** ହଁ, କାମରେ ଆସେ ନା ! ବ୍ୟବହାର ମଧ୍ୟ ଭଲ ଚାଲେ । 'ଜ୍ଞାନୀପୁରୁଷ'ଙ୍କ ଠାରେ ବିଶେଷତା ଥାଏ । 'ଜ୍ଞାନୀପୁରୁଷ'ଙ୍କ ଠାରେ ବୋଧକଳା ଏବଂ ଜ୍ଞାନକଳା ଉଭୟ କଳା ଥାଏ । ବୋଧକଳା ସୁଝ୍(ଦର୍ଶନ)ରୁ ଉତ୍ପନ୍ନ ହୋଇଛି ଏବଂ ଜ୍ଞାନକଳା ଜ୍ଞାନରୁ ଉତ୍ପନ୍ନ ହୋଇଛି, ସେଥିପାଇଁ ସେଠାରେ (ଜ୍ଞାନୀପୁରୁଷଙ୍କ ପାଖରେ) ଆମର ନିରାକରଣ ଆସିଯାଏ । କେଉଁଦିନ ଯଦି ଏପରି କଥାବାର୍ତ୍ତା କରିବ ତେବେ ସେଥିରେ କ'ଣ ଅସୁବିଧା ? ଆମର କ'ଣ କ୍ଷତି ହୋଇଯିବ ? 'ଦାଦା' ବି ବସିଥାନ୍ତି, ତାଙ୍କର କିଛି ଫିସ୍ ନଥାଏ । ଫିସ୍ ଥା'ନ୍ତା ତେବେ ଅସୁବିଧା ହୋଇଥାନ୍ତା ।

**ପ୍ରଶ୍ନକର୍ତ୍ତା :** ଯୁବକ ଏବଂ ଯୁବତୀ ବିବାହିତ ଜୀବନରେ ପ୍ରବେଶ କରିବା ପୂର୍ବରୁ ସ୍ତ୍ରୀ ଅବା ପୁରୁଷଙ୍କୁ କିପରି ପସନ୍ଦ କରିବେ ଆଉ କ'ଣ କରିବେ? କ'ଣ ଦେଖିବେ? ଗୁଣ କିପରି ଦେଖିବେ ?

**ଦାଦାଶ୍ରୀ :** ତାହା ବେଶୀ ଦେଖିବାର ଆବଶ୍ୟକତା ନାହିଁ । ଯୁବକ-ଯୁବତୀ ବିବାହ ସମୟରେ ଦେଖିବାକୁ ଯିବେ ଆଉ ଆକର୍ଷଣ ନହେବ ତେବେ ବନ୍ଦ ରଖିବ । ଆଉ କିଛି ବି ଦେଖିବାର ଆବଶ୍ୟକତା ନାହିଁ । ଆକର୍ଷଣ ହେଉଛି ନା ନାହିଁ, ଏତିକି ହିଁ ଦେଖିବ ।

**ପ୍ରଶ୍ନକର୍ତ୍ତା :** କେଉଁ ପ୍ରକାରର ଆକର୍ଷଣ ?

**ଦାଦାଶ୍ରୀ :** ଏହି ଆଖିର ଆକର୍ଷଣ ହୁଏ, ଭିତରେ ଆକର୍ଷଣ ହୁଏ । ବଜାରରେ ତୁମକୁ କୌଣସି ଜିନିଷ କିଣିବାର ଥିବ, ତେବେ ସେହି ଜିନିଷର ଆକର୍ଷଣ ଯଦି ନହେବ ତେବେ ତୁମେ କିଣିପାରିବ ନାହିଁ । ଅର୍ଥାତ ତାହାର ହିସାବ ଥିବ ତେବେ ଆକର୍ଷଣ ହୁଏ । ପ୍ରକୃତିର ହିସାବ ବିନା କୌଣସି ବିବାହ ହୋଇପାରିବ ନାହିଁ । ଅତଃ ଆକର୍ଷଣ ହେବା ଦରକାର ।

ଏହା ଉପହାସ କରିବାର ଯୁଗ ଅଟେ । ଏଣୁ ସ୍ତ୍ରୀମାନଙ୍କର ଉପହାସ ହେଉଛି । ଝିଅ ଦେଖିବାକୁ ଯାଏ, ସେତେବେଳେ ପୁଅ କହେ... ଏମିତି ବୁଲ, ସେମିତି ବୁଲ । ଏତେ ଉପହାସ !

ଆଜିକାଲି ତ ପୁଅମାନେ ଝିଅମାନଙ୍କୁ ପସନ୍ଦ କରିବା ପୂର୍ବରୁ ବହୁତ ଖୁଣନ୍ତି । 'ବହୁତ ଲମ୍ବା ଅଟେ, ବହୁତ ଛୋଟ, ବହୁତ ମୋଟି, ବହୁତ ପତଳି, ଟିକିଏ କାଳି' ଜଣେ ପୁଅ ଏଭଳି କହୁଥିଲା, ତେବେ ମୁଁ ତା'କୁ ଧମକାଇଲି । ମୁଁ କହିଲି, 'ତୋ ମା ମଧ୍ୟ ବୋହୂ ହୋଇଥିଲା । ତୁ କି ପ୍ରକାର ମଣିଷ ?' ସ୍ତ୍ରୀମାନଙ୍କର ଏଭଳି ଘୋର ଅପମାନ !

ଯଦି ଲୋକେ ମୋତେ କହିବେ ଯେ ଯାଆନ୍ତୁ, ଆପଣଙ୍କୁ ଅନୁମତି ଅଛି, ଆପଣଙ୍କୁ ଏ ପୁଅକୁ ଯାହା କହିବାର ଅଛି କୁହନ୍ତୁ । ସେ ପୁଅ ବି କହେ ଯେ ମୋତେ ଯାହା କହିବାର ଇଚ୍ଛା କୁହନ୍ତୁ, ତେବେ ମୁଁ କହିବି ଯେ ଭାଇ, ଏ ଝିଅ କ'ଣ ମଇଁଷୀ ଅଟେ, ଯେ ଏଭଳି ଦେଖୁଛୁ ? ମଇଁଷୀକୁ ଚାରିଆଡୁ ଦେଖିବାକୁ ପଡ଼େ । ଏ ଝିଅକୁ ବି ?

ଏବେ ସ୍ତ୍ରୀ ମାନେ ଏହାର ପ୍ରତିଶୋଧ କେବେ ନିଅନ୍ତି, ଏହା ଜାଣିଛ ? ଏହି ଉପହାସ କଲ, ତାହାର ? ଏହାର ପରିଣାମ ପୁଅମାନଙ୍କୁ କ'ଣ ମିଳିବ ପରେ ?

ଏ ତ ସ୍ତ୍ରୀମାନଙ୍କର ସଂଖ୍ୟା ବେଶୀ ଅଛି, ସେଥିପାଇଁ ବିଚାରି ମାନଙ୍କର ଦାମ କମି ଯାଇଛି । ପ୍ରକୃତି ହିଁ ଏପରି କରାଏ । ଏବେ ଏହାର ରିଏକ୍ସନ କେବେ ଆସିବ ? ପ୍ରତିଶୋଧ କେବେ ମିଳିବ ? ଯେବେ ସ୍ତ୍ରୀମାନଙ୍କର ସଂଖ୍ୟା କମ ହୋଇଯାଏ ଏବଂ ପୁରୁଷମାନଙ୍କର ସଂଖ୍ୟା ବଢ଼ିଯାଏ, ସେତେବେଳେ ସ୍ତ୍ରୀମାନେ କ'ଣ କରନ୍ତି ? ସ୍ୱୟଂବର ! ଅର୍ଥାତ ସେ ଝିଅ ଗୋଟେପଟେ ଆଉ ଏମାନେ ଶହେ କୋଡ଼ିଏ ପୁରୁଷ । ସ୍ୱୟଂବରରେ ସମସ୍ତେ ସଫା ସୁତୁରା ପିନ୍ଧି ଟାଇଟ ହୋଇ ଆସନ୍ତି ଏବଂ ନିଶକୁ ଏମିତି ଏମିତି କରୁଥାନ୍ତି ! ତା' ରାସ୍ତା ଦେଖୁଥାନ୍ତି ଯେ କେବେ ମୋତେ ବରମାଳା ପିନ୍ଧାଇବ ! ସେ ଦେଖି-ଦେଖି ଆସେ । ଇଏ ଭାବୁଥାଏ ଯେ ମୋତେ ପିନ୍ଧାଇବ, ଏମିତି ବେକ ଆଗକୁ ମଧ୍ୟ କରେ କିନ୍ତୁ ସେ ତା ମୁହଁକୁ ଘାସ ପକାଏ ହିଁ ନାହିଁ ନା ! ପୁଣି ଯେତେବେଳେ ତା' ହୃଦୟ ଭିତରୁ କାହା ପ୍ରତି ଏକାକାର ହେବ, ଆକର୍ଷଣ ହେବ, ତା'କୁ ବରମାଳା ପିନ୍ଧାଏ । ପୁଣି ପଛେ ସେ ନିଶରେ ହାତ ମାରୁଥାଉ କି ନାହିଁ ! ସେଠି ପୁଣି ଉପହାସ ହୁଏ । ବାକି ସବୁ ପୁଣି ମୁର୍ଖ ବନି ଚାଲିଯାନ୍ତି, ଏମିତି-ଏମିତି କରି । ସେତେବେଳେ ଏପରି ଉପହାସ ହୋଇଥିଲା, ଏବେ ସାମ୍ନାରୁ ପ୍ରତିଶୋଧ ମିଳୁଛି !

ଆଜିକାଲି ତ ବିଲକୁଲ ସୌଦାବାଜି ହୋଇଗଲାଣି, ସୌଦାବାଜି ! ପ୍ରେମ ରହିଲା କେଉଁଠି, ସୌଦାବାଜି ହୋଇଗଲାଣି ! ଗୋଟେପଟେ ଟଙ୍କା ରଖ ଆଉ ଗୋଟେ ପଟେ ଆମ ପୁଅ, ତେବେ ବିବାହ ହେବ ଏପରି କହୁଛନ୍ତି । ଗୋଟିଏ ତରାଜୁରେ

ଟଙ୍କା ରଖିବାକୁ ପଡ଼େ, ତରାଜୁର ମାପରେ ମାପୁଛନ୍ତି ।

## (୧୮) ପତିର ଚୟନ

ପରବଶତା, କେବଳ ପରବଶତା ! ଯେଉଁଠି ଦେଖ ସେଠି ପରବଶ ! ପିତା ସବୁବେଳ ପାଇଁ ନିଜ ଘରେ ଝିଅକୁ ରଖନ୍ତି ନାହିଁ । କୁହନ୍ତି, 'ସେ ତା ଶ୍ୱଶୁର ଘରେ ହିଁ ଶୋଭା ଦିଏ' ଆଉ ଶ୍ୱଶୁର ଘରେ ତ ସମସ୍ତେ କେବଳ ଗାଳି କରିବା ପାଇଁ ହିଁ ବସିଥାନ୍ତି । ତୁ ବି ଶାଶୁକୁ କହୁ 'ମା, ଆପଣଙ୍କର ମୁଁ କ'ଣ କରିବି ? ମୋତେ ତ କେବଳ ପତି ଦରକାର ଥିଲା ?' କିନ୍ତୁ ନା, ପତି ଏକୁଟିଆ ଆସେ ନାହିଁ, ସାଥିରେ ସେନା ଆସିବ ନିଶ୍ଚୟ । ସେନା-ହତିଆର ସମେତ ।

ବାହା ହେବାରେ ଅସୁବିଧା ନାହିଁ । ବିବାହ କର କିନ୍ତୁ ବୁଝି-ବିଚାରି ବିବାହ କର ଯେ 'ଏମିତି ହିଁ ବାହାରିବ ।' ଏପରି ବୁଝି ପରେ ବିବାହ କର ।

କେହି ଏପରି ଭାବ କରି ଆସିଥିବ ଯେ 'ମୋତେ ଦୀକ୍ଷା ନେବାର ଅଛି ଅଥବା ବ୍ରହ୍ମଚର୍ଯ୍ୟ ପାଳନ କରିବାର ଅଛି' ତେବେ ଅଲଗା କଥା । ନହେଲେ ବିବାହରୁ ତ ଛୁଟକାରା ହିଁ ନାହିଁ । କିନ୍ତୁ ଯଦି ପ୍ରଥମରୁ ସ୍ଥିର କରି ବିବାହ କରିବ ଯେ, ଆଗକୁ ଏପରି ହେବାର ଅଛି ତେବେ ଝଂଝଟ୍ ହେବ ନାହିଁ, ଆଶ୍ଚର୍ଯ୍ୟ ଲାଗିବ ନାହିଁ । ଏଣୁ ସ୍ଥିର କରି ପ୍ରବେଶ କରିବ, ଆଉ ସୁଖ ହିଁ ଅଛି ଏପରି ମାନି ଯଦି ପଶିବ ତେବେ ପୁଣି କେବଳ *ଉପାଧି*(ବାହାରୁ ଆସୁଥିବା ଦୁଃଖ) ହିଁ ଅନୁଭବ ହେବ । ବାହାଘର ତ ଦୁଃଖର ସାଗର ଅଟେ । ଶାଶୁଘରେ ଦାଖଲ ହେବା କ'ଣ କିଛି ସହଜ କଥା ? ଏବେ ସଂଯୋଗାଧୀନ କେଉଁଠି ପତି ଏକୁଟିଆ ମିଳେ, ଯଦି ତା'ର ମାତା-ପିତାଙ୍କ ମୃତ୍ୟୁ ହୋଇଯାଇଥିବ ତେବେ ।

ଯେଉଁମାନେ ସିଭିଲାଇଜଡ଼(ସଂସ୍କାରୀ) ଅଟନ୍ତି, ସେମାନେ ଲଢ଼ନ୍ତି ନାହିଁ । ରାତିରେ ଦୁହେଁ ଶୋଇଯାନ୍ତି, ଝଗଡ଼ା କରନ୍ତି ନାହିଁ । ଯେଉଁମାନେ ଅନ୍‌ସିଭିଲାଇଜଡ଼(ଅସଂସ୍କାରୀ) ଅଟନ୍ତି ନା, ସେମାନେ ଝଗଡ଼ା କରନ୍ତି । କ୍ଳେଶ କରନ୍ତି ।

**ପ୍ରଶ୍ନକର୍ତ୍ତା :** ଏବେ ଆମେ ଆମେରିକାନ ପୁଅଙ୍କ ସହ ପାର୍ଟିକୁ ଯାଉନାହୁଁ, କାହିଁକିନା ସେ ପାର୍ଟିରେ ଖାଇବା-ପିଇବା ସବୁ ହୁଏ । ସେଥିପାଇଁ ଆମେ ସେମାନଙ୍କ ପାର୍ଟିରେ ଯାଉନାହୁଁ, କିନ୍ତୁ 'ଇଣ୍ଡିୟନ' ପୁଅ ଯେଉଁ ପାର୍ଟି ରଖନ୍ତି, ସେଥିରେ ଯାଉଛୁ ଏବଂ ସମସ୍ତଙ୍କର ମମ୍ମୀ-ପାପା ସମସ୍ତଙ୍କୁ ଚିହ୍ନିଛନ୍ତି ।

**ଦାଦାଶ୍ରୀ :** କିନ୍ତୁ ଏଥିରେ ଫାଇଦା କ'ଣ ମିଳିବ ?

**ପ୍ରଶ୍ନକର୍ତ୍ତା :** ଏନ୍‌ଜୟମେଣ୍ଟ, ମଜ୍ଜା ଆସେ ।

**ଦାଦାଶ୍ରୀ :** ଏନ୍‌ଜୟମେଣ୍ଟ!! ଏନ୍‌ଜୟ ତ, ଖାଇବାରେ ବହୁତ ଏନ୍‌ଜୟମେଣ୍ଟ ଥାଏ କିନ୍ତୁ ଖାଇବାରେ କ'ଣ କରିବା ଉଚିତ, ତାହା କଣ୍ଟ୍ରୋଲ କରିବା ଉଚିତ ଯେ 'ଭାଇ, ତୋତେ ଏତିକି ହିଁ ମିଳିବ ।' ପୁଣି ସେମାନେ ଧୀରେ ଧୀରେ ଏନ୍‌ଜୟ କରି-କରି ଖାଆନ୍ତି । ଏ ତ ବେଶୀ ଛାଡ଼ ଦିଅନ୍ତି ନା, ସେଥିପାଇଁ ଏନ୍‌ଜୟ କରନ୍ତି ନାହିଁ । କେଉଁ ଅନ୍ୟ ଜାଗାରେ ଏନ୍‌ଜୟମେଣ୍ଟ ଖୋଜନ୍ତି । ଏଣୁ ଭୋଜନରେ ପ୍ରଥମେ କଣ୍ଟ୍ରୋଲ କରିବା ଉଚିତ ଯେ ଏବେ ଏତିକି ହିଁ ମିଳିବ, ଅଧିକ ମିଳିବ ନାହିଁ ।

**ପ୍ରଶ୍ନକର୍ତ୍ତା :** ଆମେ ଆମ ପୁଅ-ଝିଅଙ୍କୁ ଏଭଳି 'ପାର୍ଟି'ରେ ଯିବାକୁ ଦେବୁ? ଏଭଳି ପାର୍ଟିରେ ବର୍ଷକୁ କେତେଥର ଯିବାକୁ ଦେବୁ?

**ଦାଦାଶ୍ରୀ :** ଏପରି ଅଟେ, ଝିଅମାନଙ୍କୁ ତାଙ୍କ ମାତା-ପିତାଙ୍କ କହିବା ଅନୁସାରେ ଚାଲିବା ଉଚିତ । ଆମ ଅନୁଭବୀମାନଙ୍କ ସନ୍ଧାନ ଅଟେ ଯେ ଝିଅମାନଙ୍କୁ ସର୍ବଦା ସେମାନଙ୍କ ମାତା-ପିତାଙ୍କ କହିବା ଅନୁସାରେ ଚାଲିବା ଉଚିତ । ବିବାହ ପରେ ପତିର କହିବା ଅନୁସାରେ ଚାଲିବା ଉଚିତ । ନିଜ ଇଚ୍ଛା ଅନୁସାରେ କରିବା ଉଚିତ ନୁହେଁ । ଏଭଳି ଆମ ଅଭିଜ୍ଞଙ୍କ ମତ ।

**ପ୍ରଶ୍ନକର୍ତ୍ତା :** ପୁଅମାନଙ୍କୁ ମାତା-ପିତାଙ୍କ କହିବା ଅନୁସାରେ କରିବା ଉଚିତ ନା ନାହିଁ?

**ଦାଦାଶ୍ରୀ :** ପୁଅମାନଙ୍କୁ ମଧ୍ୟ ମାତା-ପିତାଙ୍କ କହିବା ଅନୁସାରେ ଚାଲିବାର ଅଛି, କିନ୍ତୁ ପୁଅଙ୍କ ପାଇଁ ଟିକିଏ ଢିଲା ରଖିବା ତେବେ ଚଳିବ । କାରଣ ପୁଅକୁ ରାତି ବାରଟାରେ ଯିବାକୁ କହିବ ତେବେ ଏକୁଟିଆ ଯିବ, ତେବେ ଅସୁବିଧା ନାହିଁ, କିନ୍ତୁ ତୋତେ ରାତି ବାରଟାରେ ଏକୁଟିଆ ଯିବାକୁ କହିବେ ତେବେ ଏକୁଟିଆ ଯିବୁ?

**ପ୍ରଶ୍ନକର୍ତ୍ତା :** ଯିବି ନାହିଁ, ଡର ଲାଗେ ।

**ଦାଦାଶ୍ରୀ :** ଆଉ ପୁଅ ହୋଇଥିବ ତେବେ ଅସୁବିଧା ନାହିଁ, ପୁଅକୁ ଅଧିକ ଛାଡ଼ ହେବା ଉଚିତ ଆଉ ଝିଅମାନଙ୍କୁ କମ ଛାଡ଼ ହେବା ଉଚିତ, କାହିଁକିନା ତୁମେ ବାରଟାରେ ଯାଇପାରିବ ନାହିଁ ।

ଅର୍ଥାତ ଏହା ତୁମର ଭବିଷ୍ୟତର ସୁଖ ପାଇଁ କୁହନ୍ତି । ଭବିଷ୍ୟର ସୁଖ ପାଇଁ ତୁମକୁ ମନା କରନ୍ତି । ଏବେ ତୁମେ ଏହି ଝଂଝଟ୍‌ରେ ଯଦି ପଡ଼ିବ, ତେବେ ଭବିଷ୍ୟ ବିଗାଡ଼ି ଦେବ । ତୁମର ଭବିଷ୍ୟର ସୁଖ ଚାଲିଯିବ । ଏଣୁ ଭବିଷ୍ୟ ନବିଗିଡୁ ସେହି

କାରଣରୁ ତୁମକୁ କୁହନ୍ତି ଯେ 'ବିଓ୍ୱେୟର୍, ବିଓ୍ୱେୟର୍, ବିଓ୍ୱେୟର୍ (ସାବଧାନ, ସାବଧାନ, ସାବଧାନ) ।'

**ପ୍ରଶ୍ନକର୍ତ୍ତା :** ଆମ ହିନ୍ଦୁ ଫ୍ୟାମିଲି(ପରିବାର) ରେ କୁହନ୍ତି, 'ଝିଅ ପର ଘରକୁ ଚାଲିଯିବ ଆଉ ପୁଅ ରୋଜଗାର କରି ଖୁଆଇବ ଅଥବା ଆମର ସାହାରା ବନିବ ।' ଏଭଳି ଆଶା ଥିବ, ଏଭଳି ଦୃଷ୍ଟି ରଖିବେ ଏବଂ ଝିଅ ପ୍ରତି ପରିବାରବାଲା ପ୍ରେମ ନ ରଖିବେ, ତେବେ କ'ଣ ତାହା ଠିକ ?

**ଦାଦାଶ୍ରୀ :** ପ୍ରେମ ରଖୁ ନାହାନ୍ତି, ଏହି ଅଭିଯୋଗ କରୁଥିବା ଝିଅ ନିଜେ ହିଁ ଭୁଲ । ଏହି ବିରୋଧ ହିଁ ଭୁଲ । ଏହା ନିର୍ବୋଧତା ହିଁ ଅଟେ ! ପ୍ରେମ ରଖନ୍ତି ନାହିଁ, ଏଭଳି କେଉଁ ମାତା-ପିତା ହିଁ ନଥାନ୍ତି । ଏହା ତ ତାଙ୍କୁ ଦୃଷ୍ଟି ହିଁ ନାହିଁ, ତେବେ ପୁଣି କ'ଣ ହେବ ? ପ୍ରେମ ରଖୁନାହାନ୍ତି ଏପରି କହିବା, ତେବେ ମାତା-ପିତାଙ୍କୁ କେତେ ଦୁଃଖ ଲାଗିବ ? ତେବେ ତୋତେ ପିଲାଦିନରୁ ପାଳିଲେ ପୋଷିଲେ କ'ଣ ପାଇଁ, ଯଦି ପ୍ରେମ ରଖିବାର ନଥିଲା ?

**ପ୍ରଶ୍ନକର୍ତ୍ତା :** ତେବେ ପୁଣି ମୋତେ ଏପରି ଫିଲିଙ୍ଗ୍ (ଭାବ) କାହିଁକି ହେଲା ଯେ ମା-ବାପା ପ୍ରେମ କରୁନାହାନ୍ତି ? ମୋତେ ଏପରି ଦୃଷ୍ଟି କେଉଁଠୁ ଆସିଲା ?

**ଦାଦାଶ୍ରୀ :** ନା, ସମସ୍ତେ ଏପରି ପ୍ରଶ୍ନ ସୃଷ୍ଟି କରନ୍ତି, କ'ଣ କରିବା ଏହାର ? ଛୋଟ ଥିବ ତେବେ ଗୋଇଠିରେ ଦବାଇ ଦେବା, କିନ୍ତୁ ବଡ଼ ହୋଇଗଲା ତେବେ କରିବା ବି କ'ଣ ?

ଏବେ ମୋତେ ନଜର ଆସୁଛି, ତା'କୁ ଏ ଯେଉଁ ଅକଲ ମିଳିଛି ନା, ବାହାରୁ ବୁଦ୍ଧି ମିଳିଛି ନା ତାହା ବିପରୀତ ବୁଦ୍ଧି ଅଟେ । ସେଥିପାଇଁ ନିଜେ ବି ଦୁଃଖୀ ହୁଏ ଏବଂ ଅନ୍ୟଙ୍କୁ ବି ଦୁଃଖୀ କରେ ।

**ପ୍ରଶ୍ନକର୍ତ୍ତା :** ହଁ, ଆଜିକାଲି ଝିଅମାନେ ବି ଜଲ୍‌ଦୀ ବାହା ହେବାପାଇଁ ପ୍ରସ୍ତୁତ ହେଉନାହାନ୍ତି !

**ଦାଦାଶ୍ରୀ :** ଝିଅମାନେ ପ୍ରସ୍ତୁତ ହେଉନାହାନ୍ତି । ଯଥା ସମ୍ଭବ ବାହାଘର ଜଲ୍‌ଦୀ ହୋଇଯିବ ତେବେ ଭଲ । ପାଠପଢ଼ା ଶେଷ ହୋଇଯାଏ ଏବଂ ଏଠି ବାହାଘର ହୋଇଯାଏ, ଏପରି ହୋଇପାରିବ ତେବେ ଉତ୍ତମ । ଉଭୟ ସାଥିରେ ହୋଇଯାଏ । ଯଦି ବିବାହ ପଶ୍ଚାତ ଗୋଟେ ଅଧେ ବର୍ଷରେ ପାଠପଢ଼ା ପୁରା ହେଉଥିବ ତେବେ ମଧ୍ୟ ଅସୁବିଧା ନାହିଁ । କିନ୍ତୁ ବିବାହ ବନ୍ଧନରେ ଛନ୍ଦି ହୋଇଯିବା, ତେବେ 'ଲାଇଫ୍'(ଜୀବନ) ଭଲ ବିତିବ, ନହେଲେ ପରେ ଲାଇଫ୍ ବହୁତ ଦୁଃଖମୟ ହୋଇଯାଏ ।

ଫ୍ରେଣ୍ଡ ଉପରେ ମୋହ ଅର୍ଥାତ ସଖୀ କଥା କହୁଛ ନା ସଖା କଥା ?

**ପ୍ରଶ୍ନକର୍ତ୍ତା :** ନା, ଉଭୟଙ୍କର ।

**ଦାଦାଶ୍ରୀ :** (ଝିଅକୁ) ସଖା ବି ! ନିଶବାଲା (ପୁରୁଷ) ବି !

**ପ୍ରଶ୍ନକର୍ତ୍ତା :** ହଁ, ଉଭୟ ।

**ଦାଦାଶ୍ରୀ :** ଠିକ ଅଛି । ତେବେ ତା'ସହ ଆମକୁ ସମଭାବରେ ରହିବାର ଅଛି । ସେହି ଘଡ଼ି ତୋର ଜାଗୃତି ରହିବା ଦରକାର । ସେହି ଘଡ଼ି ହୋସ୍ ନ ଉଡ଼ିଯିବା ଦରକାର । ଯାହାଙ୍କୁ ବ୍ରହ୍ମଚର୍ଯ୍ୟର ପାଳନ କରିବାର ଅଛି, ଯାହାଙ୍କୁ ମୋକ୍ଷ ଦରକାର, ସେ ସ୍ତ୍ରୀମାନଙ୍କୁ ପୁରଷଙ୍କ ପରିଚୟ କମରୁ କମ କରିବ, ଅନିବାର୍ଯ୍ୟ ହେଲେ ଯାଇ । ଯେଉଁମାନଙ୍କୁ ମୋକ୍ଷରେ ଯିବାର ଅଛି, ସେମାନଙ୍କୁ ଏତିକି ପ୍ରତିକାର କରିବା ଉଚିତ । ଏପରି ତୋତେ ଲାଗୁଛି ନା ଲାଗୁନାହିଁ ? ତୋତେ କ'ଣ ଲାଗୁଛି ?

**ପ୍ରଶ୍ନକର୍ତ୍ତା :** ହଁ, କରିବା ଉଚିତ ।

**ଦାଦାଶ୍ରୀ :** କ'ଣ ମୋକ୍ଷରେ ଯିବାର ନାହିଁ ଏବେ ? ଚଳିବ ଏମିତି ?

**ପ୍ରଶ୍ନକର୍ତ୍ତା :** ନା, ମୋକ୍ଷରେ ଯିବାର ଅଛି ।

**ଦାଦାଶ୍ରୀ :** ତେବେ ପୁଣି ଏମାନଙ୍କ ସହ କ'ଣ ମୈତ୍ରୀ କରିବା, ଏହା କେବଳ ଅଇଁଠା ।

(ସେ ଝିଅକୁ) ସ୍ତ୍ରୀମାନଙ୍କ ସହ ଘୂର-ବୁଲ, ଖାଅ-ପିଅ, ମଜା କର, ପୁରୁଷଙ୍କ ସହ ନୁହେଁ ।

**ପ୍ରଶ୍ନକର୍ତ୍ତା :** ଦାଦାଜୀ, ଜଣେ ଭଉଣୀ ପଚାରୁଛନ୍ତି ଯେ ଆମର ପୁଅଙ୍କ ସହ 'ଫ୍ରେଣ୍ଡଲୀ ରିଲେଶନ୍' (ମୈତ୍ରୀ ସମ୍ବନ୍ଧ) ଥିବ, ତଥାପି ମାତା-ପିତା ଶଙ୍କା କାହିଁକି କରନ୍ତି ?

**ଦାଦାଶ୍ରୀ :** ନା, ପୁଅଙ୍କ ସହ ଫ୍ରେଣ୍ଡଲୀ ରିଲେଶନ୍ ରଖି ହିଁ ପାରିବା ନାହିଁ । ପୁଅଙ୍କ ସହ ଫ୍ରେଣ୍ଡଲୀ ରିଲେଶନ୍ ଠିକ ନୁହେଁ ।

**ପ୍ରଶ୍ନକର୍ତ୍ତା :** ସେଥିରେ କ'ଣ ଅସୁବିଧା ?

**ଦାଦାଶ୍ରୀ :** ପେଟ୍ରୋଲ ଏବଂ ଅଗ୍ନି, ଉଭୟ ସାଥିରେ ରହିପାରିବେ ନାହିଁ ନା ? ସେ ଦୁହେଁ (ପୁଅ ଏବଂ ଝିଅ) ମଉକା ଖୋଜୁଥାନ୍ତି । ଜଣେ ଭାବେ ଯେ ସେ ମୋ ଫାଶରେ କେବେ ପଡ଼ିବ ଏବଂ ସାମ୍ନାବାଲା ଭାବେ ଯେ ସେ ମୋ ଫାଶରେ କେବେ ପଡ଼ିବ ? ! ଉଭୟ ଶିକାରର ପ୍ରତୀକ୍ଷାରେ ରହିଥାନ୍ତି, ଉଭୟ ଶିକାରୀ !

**ପ୍ରଶ୍ନକର୍ତ୍ତା :** ଆପଣ କହିଲେ ନା ଯେ ପୁଅ ଏବଂ ଝିଅମାନଙ୍କୁ ଦୋସ୍ତୀ କରିବା ଉଚିତ ନୁହେଁ ।

**ଦାଦାଶ୍ରୀ :** ବିଲକୁଲ କରିବା ଉଚିତ ନୁହେଁ ।

**ପ୍ରଶ୍ନକର୍ତ୍ତା :** ବିଲକୁଲ କରିବା ଉଚିତ ନୁହେଁ, ଏପରି କହିଲେ ଏହାଦ୍ୱାରା ସେମାନଙ୍କୁ ସନ୍ତୋଷ ହେଲା ନାହିଁ ।

**ଦାଦାଶ୍ରୀ :** ସେ ଫ୍ରେଣ୍ଡସିପ ଶେଷରେ ପଏଜନ(ବିଷ) ସମାନ ବନିଯିବ, ଶେଷରେ ପଏଜନ ହିଁ ବନିଯିବ । ଝିଅକୁ ମରିବାର ସମୟ ଆସିବ, ପୁଅର କିଛି ଯାଏ ନାହିଁ । ସେଥିପାଇଁ ପୁଅ ସହ ତ ଛିଡ଼ା ହେବା କଥା ମଧ୍ୟ ନୁହେଁ । ପୁଅମାନଙ୍କ ସହ କୌଣସି ଫ୍ରେଣ୍ଡସିପ କରିବ ନାହିଁ । ନଚେତ ତାହା ତ ପଏଜନ ଅଟେ । ଲକ୍ଷେ ଟଙ୍କା ଦିଆଯାଏ ତଥାପି ଫ୍ରେଣ୍ଡସିପ୍ କରିବ ନାହିଁ । ପୁଣି ଅନ୍ତରେ ବିଷ ଖାଇ ମରିବାକୁ ପଡ଼େ । କେତେ ସବୁ ଝିଅ ବିଷ ଖାଇ ମରି ଯାଉଛନ୍ତି ।

ସେଥିପାଇଁ ବୟସ ହୋଇଗଲେ ଆମକୁ ଘରେ ମାତା-ପିତାଙ୍କୁ କହିଦେବା ଉଚିତ ଯେ, 'କେଉଁ ଭଲ ବ୍ୟକ୍ତି ଦେଖି ମୋ ରିସ୍ତା ଯୋଡ଼ି ଦିଅ, ଆଉ ପୁଣି ଭାଙ୍ଗିବ ନାହିଁ ଏପରି ଯୋଡ଼ି ଦିଅ । ମୋ ବିବାହ ପାଇଁ ଏବେ ପୁଅ ଖୋଜନ୍ତୁ । ଦାଦା ଭଗବାନ ମୋତେ ତୁମକୁ କହିବା ପାଇଁ କହିଛନ୍ତି ।' ଏଭଳି କହିଦେବ, ସରମରେ ରହିବ ନାହିଁ । ତେବେ ସେମାନଙ୍କୁ ଜଣା ପଡ଼ିବ ଯେ ଝିଅର ଖୁସି ଅଛି, ଚାଲ ଏବେ ବାହା କରାଇ ଦେବା । ପରେ ଦୁଇ ବର୍ଷ ପରେ ବାହା ହୋଇଯିବ, ପରସ୍ପର ପସନ୍ଦ କରି ରିସ୍ତା ଯୋଡ଼ି ନେବ । ବାହା ହୋଇଯିବା ପରେ ଅନ୍ୟ କେହି ଆମ ଆଡ଼େ ଦେଖିବ ନାହିଁ । କହିବ, ତା'ର ତ ସ୍ଥିର ହୋଇଯାଇଛି !

ଏ ଦୋସ୍ତୀ ଠିକ ନୁହେଁ, ଲୋକେ ତ ଛଳ-କପଟବାଲା ଅଟନ୍ତି । ଝିଅମାନଙ୍କ ସହ ମିତ୍ରାଚାରି କରିପାରିବା । ପୁରୁଷଙ୍କ ମିତ୍ରାଚାରୀ କରିପାରିବା ନାହିଁ । ଧୋକା ଦେଇ ଚାଲିଯାନ୍ତି । କେହି ବିଶ୍ୱାସଯୋଗ୍ୟ ନୁହେଁ, ସମସ୍ତେ ଧୋକାବାଜ୍ । କେହି ଗୋଟିଏ ବି ଅସଲି ନୁହେଁ । ବାହାରେ କାହାର ବିଶ୍ୱାସ କରିବ ନାହିଁ ।

ବାହା ହୋଇଯିବା ଭଲ, ଏଠି-ସେଠି ଭଟକିବା ତାହାଦ୍ୱାରା କିଛି ମଙ୍ଗଳ ହୁଏ ନାହିଁ । ତୋ ମା-ବାପା ବାହା-ଶାହା ହୋଇଛନ୍ତି, ତେବେ ଅଛି କିଛି ଝଂଝଟ୍ ? ଏମିତି ତୋତେ ମଧ୍ୟ ବିବାହ ବନ୍ଧନରେ ବାନ୍ଧିହେବା ପସନ୍ଦ ଆସୁନାହିଁ ? ଖୁଣ୍ଟରେ ବାନ୍ଧିହେବା (ବିବାହ ବନ୍ଧନରେ ବାନ୍ଧିହେବା) ତୋତେ ପସନ୍ଦ ନୁହେଁ ? ମୁକ୍ତ ରହିବା ପସନ୍ଦ ?

ଝିଅମାନଙ୍କୁ କହେ ଯେ ବାହା କାହିଁକି ହେଉନାହଁ? ତେବେ କୁହନ୍ତି, 'କଣ ଦାଦା ଆପଣ ବି ଏମିତି କହୁଛନ୍ତି, ଆମକୁ ବାହା ହେବାକୁ କହୁଛନ୍ତି।' ମୁଁ କହିଲି, 'ଏହି ସଂସାରରେ ବାହା ହେବା ବିନା ଚଳିବ ନାହିଁ, ନହେଲେ ପୁଣି ବ୍ରହ୍ମଚର୍ଯ୍ୟ ପାଳନ କରିବାର ଅଛି ଏପରି ଡିସାଇଡ୍ କର ଆଉ ତାହା ପୁଣି ନିଶ୍ଚିତ, ଦୃଢ଼ତାପୂର୍ବକ ହେବା ଉଚିତ। ଏପରି ନ ହୁଏ ତେବେ ବାହା ହୋଇଯାଅ, କିନ୍ତୁ ଦୁଇଟିରୁ ଗୋଟିଏରେ ଆସିଯାଅ।' ତେବେ କୁହନ୍ତି, 'କାହିଁକି ବାହା ହେବାପାଇଁ କହୁଛନ୍ତି?' ମୁଁ କହିଲି, 'କାହିଁକି? କ'ଣ ଅସୁବିଧା? କେହି ଭଲ ପୁଅ ମିଳୁନାହିଁ?' ତେବେ କହିଲା, 'ଭଲ ପୁଅ ଅଛନ୍ତି କେଉଁଠି? ଲଲୁ ଅଟନ୍ତି ସବୁ! ଲଲୁଙ୍କ ସହ କ'ଣ ବାହା ହେବି?' ଏହା ଶୁଣି ମୁଁ ଚମକି ପଡ଼ିଲି। ମୁଁ କହିଲି ଏ ଝିଅମାନେ କିଭଳି? ଦେଖ ତ, ଏବେଠୁ ଏମାନଙ୍କର ଏତେ ପାୱାର, ତେବେ ପରେ ସେମାନଙ୍କୁ କିପରି ବଞ୍ଚିବାକୁ ଦେବେ, ବିଚାରାମାନଙ୍କୁ? ଏଥିପାଇଁ ବହୁତ ପୁଅ ମୋତେ କୁହନ୍ତି, 'ଆମକୁ ବାହା ହେବାର ନାହିଁ।' ଝିଅମାନେ କ'ଣ କୁହନ୍ତି, 'ଲଲୁ ସହ କ'ଣ ବାହା ହେବି?' ମୁଁ କହିଲି, 'ଏପରି କହ ନାହିଁ। ତୋ ମନରୁ ଏହା ବାହାର କରି ଦେ ଯେ ସେ ଲଲୁ ଅଟେ। କାରଣ ବାହା ହେବା ବିନା ଚାରା ନାହିଁ।' ଏମିତି ଚଳିବ ନାହିଁ। ମନରେ ଲଲୁ ଅଟେ ଏପରି ପଶିଯାଏ ତେବେ ପୁଣି ସବୁଦିନ ଝଗଡ଼ା ହୁଏ। ପୁଣି ତୋତେ ସେ ଲଲୁ ହିଁ ଲାଗୁଥିବ।

ପୁରା ସଂସାର ମୋକ୍ଷ ଆଡ଼କୁ ହିଁ ଯାଉଅଛି, କିନ୍ତୁ ମୋକ୍ଷ ପାଇଁ ଏସବୁ ହେଲ୍ପିଙ୍ଗ (ସହାୟକ) ନୁହେଁ। ଏମାନେ ତ ଲଢ଼େଇ-ଝଗଡ଼ା କରି ଓଲଟା ବ୍ରେକ୍ ଲଗାନ୍ତି। ନହେଲେ ଉଷ୍ଣତା(ଗରମ)ର ସ୍ୱଭାବ ଏପରି ଅଟେ ଯେ ମେଘ ଟାଣି ଆଣେ। ଯେଉଁଠି ଥିବ ସେଠୁ ଟାଣି ଆଣେ। ଉଷ୍ଣତାର ସ୍ୱଭାବ ଅଟେ ଯେ ବଢ଼ି ବଢ଼ି ଚାଲେ ଏବଂ ମେଘ ଟାଣି ଆଣେ। ଏ ସଂସାର ବ୍ୟାକୁଳ ହେବାପରି ନୁହେଁ।

ଏହି ସଂସାରର ସ୍ୱଭାବ ଏପରି ଅଟେ ଯେ ଆମକୁ ମୋକ୍ଷ ଆଡ଼କୁ ନେଇଯାଏ। ମୋକ୍ଷକୁ ଟାଣି ଆଣେ। ସଂସାର ଯେତେ ବେଶୀ କଠିନ ହେବ ନା, ମୋକ୍ଷ ସେତିକି ଜଲ୍‌ଦୀ ଆସେ। କିନ୍ତୁ କଠିନ ହେବ ସେତେବେଳେ ଆମକୁ ବିଗିଡ଼ି ନଯିବା ଉଚିତ, ସ୍ଥିର ରହିବା ଉଚିତ। ସଠିକ ଉପାୟ କରିବା ଉଚିତ, ଭୁଲ ଉପାୟ କରିବା ଦ୍ୱାରା ପୁଣି ଥରେ ଖସି ପଡ଼ନ୍ତି। ଦୁଃଖ ଆସିଲା ତେବେ ଏପରି ବୁଝିବ ଯେ ମୋ ଆତ୍ମା ପାଇଁ ଭିଟାମିନ ମିଳିଲା ଏବଂ ଯେବେ ସୁଖ ପ୍ରାପ୍ତ ହେବ ତେବେ ଦେହର ଭିଟାମିନ ମିଳିଲା, ଏପରି ବୁଝିବ। ଆମକୁ ସବୁଦିନ ଭିଟାମିନ ମିଳେ, ମୁଁ ତ ଏପରି ମାନି ପିଲାଦିନରୁ

ଟେଷ୍ଟ କରି କରି ଆଗକୁ ବଢ଼ିଛି । ତୁମେ ତ କେବଳ ଗୋଟିଏ ପ୍ରକାର ଭିଟାମିନକୁ ଭିଟାମିନ କୁହ, ତାହା ବୁଦ୍ଧିର ଭିଟାମିନ ଅଟେ । ଯେବେକି ଜ୍ଞାନ ଉଭୟକୁ ଭିଟାମିନ କହେ । ସେ ଭିଟାମିନ ଭଲ ଯେ ବହୁତ କିଛି ଖାଇବାକୁ ଥିବ, ତଥାପି ଲୋକେ ତପ କରନ୍ତି । ମଜ୍ଜାଦାର ତରକାରୀ ହୋଇଥିବ, ତଥାପି ଲୋକେ ତପ କରନ୍ତି । ତପ କରନ୍ତି ଅର୍ଥାତ ଦୁଃଖ ସହନ କରନ୍ତି କାରଣ ଆତ୍ମାର ଭିଟାମିନ ମିଳୁ । ଏସବୁ ତୁମେ କେବେ ଶୁଣିନାହଁ ?

**ପ୍ରଶ୍ନକର୍ତ୍ତା :** ହଁ, ଶୁଣିଛି ଦାଦାଜୀ ।

**ଦାଦାଶ୍ରୀ :** ଆଉ ଏହି ତପ ତ ଘରେ ବସି ବସି ଆପେ ଆପେ ମିଳେ ।

ଲଭ୍ ମ୍ୟାରେଜ ପସନ୍ଦ କରିବା ଭଳି ଜିନିଷ ନୁହେଁ । କାଲି ତା'ର ମିଜାଜ୍ କ'ଣ ହେବ, କାହାକୁ ଜଣା ? ମାତା-ପିତା ଯାହାକୁ ପସନ୍ଦ କରନ୍ତି, ତା'କୁ ଦେଖ । ପୁଅ ବୋକା କିମ୍ବା ଡିଫେକ୍ଟବାଲା ତ ନୁହଁ ନା ? ବୋକା ନହେବା ଉଚିତ ! କ'ଣ ବୋକା ଥାଆନ୍ତି ?

ଆମକୁ ପସନ୍ଦ ଆସେ ଏପରି ଦରକାର । ଟିକିଏ ଆମ ମନକୁ ପସନ୍ଦ ଆସେ ଏପରି ହେବା ଦରକାର । ବୁଦ୍ଧିର ଲିମିଟ୍‌ରେ ଆସୁଥିବା ଦରକାର । ଅହଂକାର ଏକ୍ସେପ୍ଟ (ଗ୍ରହଣ) କରେ ଏପରି ହେବା ଦରକାର ଏବଂ ଚିତ୍ତ ଆକର୍ଷିତ ହୁଏ ଏପରି ଦରକାର । ଚିତ୍ତ ଆକର୍ଷିତ ହୁଏ ଏପରି ଦରକାର ନା ? ଅତଃ ମାତା-ପିତା ଯାହା ଖୋଜିବେ ସେଥିରେ ଅସୁବିଧା ନାହିଁ, କିନ୍ତୁ ଆମକୁ ବି ନିଜେ ଦେଖିନେବା ଉଚିତ ।

**ପ୍ରଶ୍ନକର୍ତ୍ତା :** କେବେ କେବେ ମାତା-ପିତା ମଧ୍ୟ ପୁଅ ଖୋଜିବାରେ ଭୁଲ କରିପାରନ୍ତି ?

**ଦାଦାଶ୍ରୀ :** ତାଙ୍କର ଇଚ୍ଛା ନାହିଁ, ତାଙ୍କ ଇଚ୍ଛା ତ ଭଲ କରିବା ପାଇଁ ହିଁ ଅଛି । ପରେ ଭୁଲ ହୋଇଯାଏ ତେବେ ଆମ ପ୍ରାରବ୍ଧର ଖେଳ ଅଟେ । କ'ଣ କରିହେବ ? ଆଉ ତୁମେ ଯଦି ସ୍ୱତନ୍ତ୍ର ରୂପରେ ଖୋଜିବ ତେବେ ସେଥିରେ ଭୁଲ ହେବାର ସମ୍ଭାବନା ବେଶୀ । ବହୁତ ଉଦାହରଣ ଅଛି, ଫେଲ୍ ହେବାର ।

ଆମର ଜଣେ ମହାତ୍ମା ଥିଲେ, ତାଙ୍କର ଏକମାତ୍ର ପୁତ୍ର ଥିଲା । ମୁଁ ତା'କୁ ପଚାରିଲି 'ଆରେ ! ତୋତେ ବାହା ହେବାର ଅଛି ନା ନାହିଁ ?' ତେବେ କହିଲା, 'କରିବି ଦାଦାଜୀ ।' 'କିଭଳି ଝିଅ ପାସ କରିବୁ ?' ତେବେ କୁହେ, 'ଆପଣ କହିବେ ସେମିତି କରିବି ।' ପୁଣି ନିଜେ ନିଜେ କହିବାକୁ ଲାଗିଲା, 'ମୋ ମମ୍ମୀ ତ ପାସ

କରାଇବାରେ ହୋସୀୟାର ଅଟେ ।' ଏମାନେ ଡିସାଇଡ୍ କରି ସାରିଛନ୍ତି, ତେବେ ମମ୍ମୀ ଯାହା ପାସ କରାଇବ ତାହା । ସେହିପରି ହେବ ।

**ପ୍ରଶ୍ନକର୍ତ୍ତା :** ମୋ ସାନ ଝିଅ ପଚାରୁଛି ଯେ 'ଏମିତି କେମିତି ବାହା ହୋଇଯିବି, ପୁଣି ତ ସାରା ଜୀବନ ବିଗିଡ଼ି ଯିବ ନା ? ପ୍ରଥମେ ପୁଅକୁ ଭଲ ଭାବରେ ଦେଖିନିଏ ଏବଂ ଜାଣିନିଏ ଯେ ପୁଅ ଭଲ ଅଟେ ନା ନାହିଁ, ପରେ ବାହାହୋଇ ହେବ ନା !' ଏଭଳି ମୋତେ ସବୁବେଳେ ପ୍ରଶ୍ନ ପଚାରୁଛି । ତେବେ ଏହାର ସଲ୍ୟୁଶନ (ସମାଧାନ) କ'ଣ ଦାଦାଜୀ ?

**ଦାଦାଶ୍ରୀ :** ସବୁଲୋକ ଦେଖିକରି ହିଁ ବାହା ହୁଅନ୍ତି ଏବଂ ପରେ ମାରାମାରି ଏବଂ ଝଗଡ଼ା ହୁଏ । ଯେଉଁମାନେ ବିନା ଦେଖାରେ ବାହାହେଲେ, ସେମାନଙ୍କର ବହୁତ ଭଲ ଚାଲୁଛି । କାହିଁକିନା ପ୍ରକୃତିର ଭେଟ ଅଟେ ଯେବେକି ସେଠି ତ ନିଜର କୁଶଳତା ଦେଖାଇଲା ।

ଆମର ଜଣେ ମହାତ୍ମାଙ୍କ ଝିଅ କ'ଣ କଲା ? ତା' ବାପାଙ୍କୁ କହିଲା ଯେ, 'ମୋତେ ସେ ପୁଅ ପସନ୍ଦ ନାହିଁ ।' ଏବେ ପୁଅ ଶିକ୍ଷିତ ଥିଲା । ଏବେ ସେ ପୁଅ ଝିଅର ମା-ବାପା ସମସ୍ତଙ୍କୁ ପସନ୍ଦ ଆସିଥିଲା । ସେଥିପାଇଁ ତା ପିତାଜୀଙ୍କୁ ବ୍ୟାକୁଳତା ହୋଇଗଲା ଯେ ବଡ଼ କଷ୍ଟରେ ଏଭଳି ଭଲ ପୁଅ ମିଳିଛି ଆଉ ଏ ଝିଅ ତ ମନା କରୁଛି ।

ପୁଣି ସେ ମୋତେ ପଚାରିଲେ ତେବେ ମୁଁ କହିଲି, 'ସେ ଝିଅକୁ ମୋ ପାଖକୁ ଡାକ ।' ମୁଁ କହିଲି, 'ଝିଅ, କ'ଣ ଅସୁବିଧା ହୋଇଛି ମୋତେ କହ ନା ? କ'ଣ ଅସୁବିଧା ? ଲମ୍ବା ଲାଗୁଛି ? ମୋଟା ଲାଗୁଛି ? ପତଳା ଲାଗୁଛି ?' ତେବେ କୁହେ, 'ନା, ଟିକିଏ ବ୍ଲାକିଶ(କଳା) ଅଛି ।' ମୁଁ କହିଲି 'ତାହା ତ ମୁଁ ଉଜାଲା କରିଦେବି, ତୋତେ ଆଉ କିଛି ଅସୁବିଧା ଅଛି ?' ତେବେ କହିଲା, 'ନା, ଆଉ କିଛି ନାହିଁ ।' ଏହା ଶୁଣି ମୁଁ କହିଲି, 'ତୁ ହଁ କରିଦେ, ପୁଣି ମୁଁ ତା'କୁ ଉଜାଲା କରିଦେବି ।' ପୁଣି ସେ ଝିଅ ତା' ବାପାଙ୍କୁ କହୁଛି, 'ତୁମେ ଦାଦାଜୀଙ୍କ ପର୍ଯ୍ୟନ୍ତ ଅଭିଯୋଗ ନେଇଗଲ ?' ତେବେ ଆଉ କ'ଣ କରାଯିବ ?

ବାହାଘର ପରେ ମୁଁ ପଚାରିଲି, 'ଭଉଣୀ, ଉଜାଲା କରିବା ପାଇଁ ସାବୁନ ମଗାଇ ଦେବି କି ?' ତେବେ କହିଲା, 'ନା ଦାଦାଜୀ, ଉଜାଲା ହିଁ ଅଛି ।' ବିନା କାରଣରେ ବ୍ଲାକିଶ, ବ୍ଲାକିଶ ! ତାହା ତ, କିଛି କଳା ଲଗାଏ ତେବେ କଳା ନଜର ଆସେ, ହଳଦିଆ ଲଗାଏ ତେବେ ହଳଦିଆ ଦିଶିବ । ବାସ୍ତବରେ ପୁଅଟି ଭଲ ଥିଲା । ମୋତେ ବି ଭଲ ଲାଗିଲା । ତା'କୁ କେମିତି ଯିବାକୁ ଦେବା ? ଝିଅ କ'ଣ ଭାବିଲା,

ଟିକିଏ ଢିଲା ଅଛି । ଠିକ୍ କରିବୁ ପୁଣି, କିନ୍ତୁ ଏପରି ଅନ୍ୟ ଜଣେ ମିଳିବ ନାହିଁ!

**ପ୍ରଶ୍ନକର୍ତ୍ତା :** କ'ଣ ଡେଟିଙ୍ଗ୍ କରିବା ପାପ? ଡେଟିଙ୍ଗ୍ ଅର୍ଥାତ ଏମାନେ ପୁଅମାନେ ଝିଅମାନଙ୍କ ସହ ବାହାରକୁ ଯାଆନ୍ତି ଏବଂ ଝିଅମାନେ ପୁଅମାନଙ୍କ ସହ ବାହାରକୁ ଯାଆନ୍ତି, ତେବେ କ'ଣ ତାହା ପାପ? ସେଥିରେ କିଛି ଅସୁବିଧା ନାହିଁ?

**ଦାଦାଶ୍ରୀ :** ହଁ, ପୁଅମାନଙ୍କ ସହ ବୁଲିବା ପାଇଁ ଇଚ୍ଛା ହେବ ତେବେ ବାହା ହୋଇଯିବ । ପୁଣି ଜଣେ ହିଁ ପୁଅ ପସନ୍ଦ କରିବ, ଜଣେ ନିଶ୍ଚିତ ହେବା ଉଚିତ । ଅନ୍ୟଥା ଏପରି ଭୁଲ କରିବା ଉଚିତ ନୁହେଁ । ଯେପର୍ଯ୍ୟନ୍ତ ବିବାହ ନ ହୋଇଯାଏ, ସେପର୍ଯ୍ୟନ୍ତ ତୁମକୁ ପୁଅମାନଙ୍କ ସହ ବୁଲିବା ଉଚିତ ନୁହେଁ ।

**ପ୍ରଶ୍ନକର୍ତ୍ତା :** ଏଠି ଆମେରିକାରେ ତ ଏମିତି ଯେ ପୁଅ-ଝିଅ ଚଉଦ ବର୍ଷ ବୟସରୁ ହିଁ ବାହାରକୁ ବୁଲିବା ପାଇଁ ଯାଆନ୍ତି । ପୁଣି ମନ ମିଶେ ତେବେ ସେଥିରେ ଆଗକୁ ବଢ଼ନ୍ତି । ସେଥିରେ ଯଦି କିଛି ବିଗିଡ଼ିଯାଏ, ପରସ୍ପର ମନ ନ ମିଶେ ତେବେ ପୁଣି ଆଉ କାହା ସହ ବୁଲନ୍ତି । ତା' ସହ ଜମିଲା ନାହିଁ ତେବେ ପୁଣି ତୃତୀୟ, ଏମିତି ଚକ୍କର ଚାଲିଥାଏ ଆଉ ଏକ ସଙ୍ଗରେ ଦୁଇ-ଦୁଇ, ଚାରି-ଚାରି ସହିତ ବି ବୁଲନ୍ତି ।

**ଦାଦାଶ୍ରୀ :** ଦ୍ୟାଟ୍ ଇଜ୍ ୱାଇଲ୍ଡନେସ୍, ୱାଇଲ୍ଡ ଲାଇଫ୍! (ତାହା ଜଙ୍ଗଲି ଅବସ୍ଥା ଅଟେ, ଜଙ୍ଗଲି ଜୀବନ!)

**ପ୍ରଶ୍ନକର୍ତ୍ତା :** ତେବେ ସେମାନଙ୍କୁ କ'ଣ କରିବା ଉଚିତ?

**ଦାଦାଶ୍ରୀ :** ଝିଅକୁ ଗୋଟିଏ ପୁଅ ପ୍ରତି ସିନ୍ସିୟର ରହିବା ଉଚିତ ଏବଂ ପୁଅ ଝିଅକୁ ସିନ୍ସିୟର ରହେ, ଏପରି ଲାଇଫ୍ ହେବା ଉଚିତ । ଇନ୍‌ସିନ୍ସିୟର ଲାଇଫ୍, ତାହା ରଙ୍ଗ୍ ଲାଇଫ୍ ଅଟେ ।

**ପ୍ରଶ୍ନକର୍ତ୍ତା :** ଏବେ ଏଥିରେ ସିନ୍ସିୟର କିପରି ରହିବେ? ଗୋଟିଏ ପୁଅ ସହ ବୁଲୁଥିବେ, ତେବେ ସେଥିରେ ପୁଅ ଅବା ଝିଅ କେହି ଜଣେ ଇନ୍‌ସିନ୍ସିୟର ହୋଇଯାଏ ।

**ଦାଦାଶ୍ରୀ :** ତେବେ ବୁଲିବା ବନ୍ଦ କରିଦେବା ଉଚିତ ନା? ବାହା ହୋଇଯିବା ଉଚିତ । ଆଫ୍ଟର ଅଲ ୱି ଆର ଇଣ୍ଡିୟାନ, ନଟ୍ ୱାଇଲ୍ଡ ଲାଇଫ୍ । (ପରିଶେଷରେ ଆମେ ଭାରତୀୟ, ଜଙ୍ଗଲୀ ନୁହେଁ ।)

ଆମର ବାହାଘର ପରେ ଦୁହେଁ ସାରା ଜୀବନ ସିନ୍ସିୟରଲୀ ସାଥିରେ ରହନ୍ତି । ଯାହାକୁ ସିନ୍ସିୟରଲୀ ରହିବାର ଥିବ, ତାକୁ ପ୍ରଥମରୁ ହିଁ ଅଲଗା ବ୍ୟକ୍ତି ସହ ଫ୍ରେଣ୍ଡସିପ ନ କରିବା ଉଚିତ । ଏହି ମାମଲାରେ ବହୁତ ଶକ୍ତ(କଠୋର) ରହିବା ଉଚିତ । ତା'କୁ

କୌଣସି ପୁଅ ସହ ବୁଲିବା ଉଚିତ ନୁହେଁ ଆଉ ବୁଲିବାର ଥିବ ତେବେ ଗୋଟିଏ ହିଁ ପୁଅ ସ୍ଥିର କରି ମାତା-ପିତାଙ୍କୁ କହିଦେବ ଯେ ବାହା ହେବି ତେବେ ଏହି ପିଲାକୁ ହିଁ ବାହାହେବି, ମୋତେ ଅନ୍ୟ କାହା ସହ ବାହା ହେବାର ନାହିଁ । ଇନ୍‌ସିନ୍ସିୟର ଲାଇଫ ଇଜ୍ ୱାଇଲ୍ଡ ଲାଇଫ । (ନିଷ୍ଠାହୀନ ଜୀବନ ଜଙ୍ଗଲୀ ଜୀବନ ଅଟେ ।)

ଚରିତ୍ର ଖରାପ ଥିବ, ବ୍ୟସନୀ (କୁଅଭ୍ୟାସ ଥିବା ଲୋକ) ହୋଇଥିବ, ତେବେ ବହୁତ ଅସୁବିଧା ହୁଏ । ବ୍ୟସନୀ ପସନ୍ଦ ଲାଗେ ନା ନାହିଁ ?

**ପ୍ରଶ୍ନକର୍ତ୍ତା :** ବିଲକୁଲ ନାହିଁ ।

**ଦାଦାଶ୍ରୀ :** ଆଉ ଚରିତ୍ର ଭଲ ଥିବ କିନ୍ତୁ ବ୍ୟସନୀ ହୋଇଥିବ ତେବେ ?

**ପ୍ରଶ୍ନକର୍ତ୍ତା :** ସିଗାରେଟ ପର୍ଯ୍ୟନ୍ତ ଚଳେଇ ହେବ ।

**ଦାଦାଶ୍ରୀ :** ଠିକ କହୁଛ, ସିଗାରେଟ ପର୍ଯ୍ୟନ୍ତ ଚଳେଇ ହେବ । ପୁଣି ପରେ ସେ ବ୍ରାଣ୍ଡିର ପେଗ୍ ଲଗେଇବ ତାହା କିପରି ପୋଷାଇବ ? ତାହାର ସୀମା ଥାଏ ଆଉ ଚରିତ୍ର ତ ବହୁତ ବଡ଼ ଜିନିଷ ଅଟେ । ଭଉଣୀ, ତୁ ଚରିତ୍ରରେ ମାନୁଛୁ ? ତୁ ଚରିତ୍ର ପସନ୍ଦ କରୁଛୁ ?

**ପ୍ରଶ୍ନକର୍ତ୍ତା :** ତାହା ବିନା ଜୀବନ କିପରି ବଞ୍ଚିହେବ ?

**ଦାଦାଶ୍ରୀ :** ହଁ, ଦେଖ ! ଯଦି ଏତିକି ହିନ୍ଦୁସ୍ତାନି ସ୍ତ୍ରୀ, ଝିଅମାନେ ବୁଝିବେ ନା ତେବେ କାମ ହୋଇଯିବ । ଯଦି ଚରିତ୍ରକୁ ବୁଝିବେ ତେବେ କାମ ହୋଇଯିବ ।

**ପ୍ରଶ୍ନକର୍ତ୍ତା :** ଆମର ଏତେ ଉଚ୍ଚ ବିଚାର ଭଲ ପଠନରୁ ହୋଇଛି ।

**ଦାଦାଶ୍ରୀ :** ସେ ଯେଭଳି ପଠନ ହେଉ ନା କାହିଁକି, ଏତେ ଭଲ ସଂସ୍କାର ତ ମିଳିଲା ନା !

ବାସ୍ତବରେ ତ ଏହା ଧୋକା ଅଟେ । ତୁମ ସମସ୍ତଙ୍କୁ ନଜର ଆସୁନାହିଁ, ମୋତେ ତ ସବୁକିଛି ଦିଶୁଛି, କେବଳ ଛଳ-କପଟ ଅଟେ । ଆଉ ଧୋକା ଥିବ, ସେଠି ସୁଖ କେବେ ବି ନଥାଏ ! ସେଥିପାଇଁ ପରସ୍ପର ପ୍ରତି ସିନ୍ସିୟର ରହିବା ଉଚିତ । ଉଭୟଙ୍କର ବାହାଘର ପୂର୍ବରୁ ଦୋଷ ହୋଇଯାଇଥିବ, ତାହା ମୁଁ ଏକ୍ସେପ୍ଟ କରାଇ ଦେବି ଏବଂ ପୁଣି ଏଗ୍ରିମେଣ୍ଟ କରିଦେବି, ଯେ ସିନ୍ସିୟର ରୁହ । ଅନ୍ୟ ଜାଗା ଦେଖିବ ନାହିଁ । ଜୀବନସାଥୀ ପସନ୍ଦ ହେଉ ବା ନହେଉ, ତଥାପି ସିନ୍ସିୟର ରହିବ । ଯଦି ନିଜ ମା ଭଲ ଲାଗୁ ନଥିବ, ତା' ସ୍ୱଭାବ ଖରାପ ଥିବ ତଥାପି ତା'କୁ ସିନ୍ସିୟର ରୁହନ୍ତି ନା !

**ପ୍ରଶ୍ନକର୍ତ୍ତା :** ସଂସାର ବ୍ୟବହାରରେ ପୂର୍ବେ ଯେଉଁ କର୍ମ ହୋଇଛି, ତାହାର ଉଦୟ ଅନୁସାରେ ସବୁ ଚାଲେ । ସେଥିରେ କେବେ ପ୍ରପଞ୍ଚ ମାଲୁମ ପଡ଼େ ଯେ ଆମ ସହ ପ୍ରପଞ୍ଚ କରାଯାଉଅଛି, ତେବେ ସେହି ସ୍ଥିତିରେ 'ସମଭାବରେ *ନିକାଲ୍‌*' କରିବା ପାଇଁ କ'ଣ କରିବୁ ?

**ଦାଦାଶ୍ରୀ :** ପତି ତେଢ଼ା ମିଳିଯାଏ ତେବେ ତା'କୁ କିପରି ଜିତିବ ? କାରଣ ଯାହା ପ୍ରାରବ୍ଧରେ ଲେଖାଅଛି, ତାହା ଛାଡ଼ିବ ନାହିଁ ନା ! ଯେବେ ଏପରି ଲାଗିବ ଯେ ଏ ସଂସାର ନିଜ ଇଚ୍ଛା ଅନୁସାରେ ଚାଲୁ ନାହିଁ ସେତେବେଳେ ମୋତେ ବତାଇଦେବ ଯେ 'ଦାଦାଜୀ, ଏମିତି ପତି ମିଳିଛି ।' ତେବେ ମୁଁ ତୋର ସବୁ ତୁରନ୍ତ ରିପେୟର କରିଦେବି ଆଉ ତୋତେ ଠିକ୍‌ରେ ରହିବାର ଚାବି ମଧ୍ଯ ଦେଇଦେବି ।

ଔରଙ୍ଗାବାଦରେ ଗୋଟିଏ ମୁସଲିମ ଝିଅ ଆସିଥିଲା । ମୁଁ ପଚାରିଲି, 'ନାଁ କ'ଣ ତୁମର ?' କହିଲା, 'ଦାଦାଜୀ, ମୋ ନାଁ ମଶରୁର୍ ।' ମୁଁ କହିଲି, 'ଆ, ଏଠି ବସ୍ ମୋ ପାଖରେ, କ'ଣ ପାଇଁ ଆସିଛୁ ?' ସେ ଆସିଲା, ଏଠାକୁ ଆସିବା ଦ୍ୱାରା ତା'କୁ ଭଲ ଲାଗିଲା । ଭିତରେ ଶୀତଳତା ଅନୁଭବ ହେଲା ଯେ ଏ ତ ଖୁଦାଙ୍କ ଆସିଷ୍ଟାଣ୍ଟ (ସହାୟକର୍ତ୍ତା) ଭଳି ହିଁ ଲାଗୁଛନ୍ତି, ଏଭଳି ଲାଗିଲା ତେଣୁ ପୁଣି ବସିଗଲା । ପରେ ଅଲଗା କଥା ଚାଲିଲା ।

ପରେ ମୁଁ ପଚାରିଲି, 'କଣ କରୁଛୁ ତୁ ?' ସେ କହିଲା, 'ମୁଁ ଲେକ୍‌ଚରର (ଅଧ୍ୟାପକ) ଅଛି ।' ଏହା ଶୁଣି ମୁଁ ପଚାରିଲି, 'ବାହାଶାହା ହୋଇଛୁ ନା ନାହିଁ ?' ତେବେ କହିଲା, 'ନା, ବାହା ହୋଇନି, କିନ୍ତୁ ନିର୍ବନ୍ଧ ହୋଇଛି ।' ମୁଁ କହିଲି, 'କେଉଁଠି ହୋଇଛି, ମୁମ୍ବାଇରେ ?' ତେବେ କହିଲା, 'ନା, ପାକିସ୍ତାନରେ ।' 'କେବେ କରୁଛ ?' ତେବେ କୁହେ, 'ଛଅ ମାସ ଭିତରେ ।' ମୁଁ କହିଲି, 'କାହା ସହିତ ? ପତି କେମିତିକା ଖୋଜିଛୁ ?' କହିଲା, 'ଲୟର ଅଟେ ।'

ପରେ ମୁଁ ପଚାରିଲି ଯେ, 'ସେ ପତି ହୋଇ ତୋତେ କିଛି ଦୁଃଖ ଦେବନାହିଁ ? ଏବେ ତୋତେ କୌଣସି ପ୍ରକାରର ଦୁଃଖ ନାହିଁ ଏବଂ ପତି ପାଇବାକୁ ଯିବୁ ଆଉ ପତି ଦୁଃଖ ଦେଲେ ?' ମୁଁ କହିଲି, 'ତା ସହ ବାହାହେବା ପରେ ତୋର କ'ଣ ଯୋଜନା ଅଛି ? ତା'ସହ ବାହା ହେବା ପୂର୍ବରୁ ତୋର କିଛି ଯୋଜନା ଥିବ ନା ଯେ ତା' ସହ କିପରି ବ୍ୟବହାର କରିବି, ନା ପୁଣି ଯୋଜନା କରିନାହୁଁ? ସେଠି ବାହାଘର ପରେ କ'ଣ କରିବି ତା' ପାଇଁ କିଛି ପ୍ରସ୍ତୁତି ତୁ କରିଥିବୁ ନା, ଯେ ବାହାଘର ପରେ ସେ ଲୟର (ଓକିଲ) ସହ ତୋର ଜମିବ କି ନାହିଁ ?' ତେବେ ସେ କହୁଛି, 'ମୁଁ ସମସ୍ତ

ପ୍ରସ୍ତୁତି କରି ରଖିଛି । ସେ ଟିକିଏ ଏମିତି କହିବ ତେବେ ମୁଁ ସାମ୍ନାରୁ ଏମିତି ଜବାବ ଦେବି । ସେ ଏମିତି କହିବ ତେବେ ମୁଁ ଏମିତି କହିବି, ସେ ଏମିତି କହିବ ତେବେ, ଗୋଟି-ଗୋଟି କଥାର ଜବାବ ମୋ ପାଖରେ ପ୍ରସ୍ତୁତ ଅଛି ।'

ରୁଷିଆ ଯେତିକି ଆମେରିକା ସାମ୍ନାରେ ଯୁଦ୍ଧର ପ୍ରସ୍ତୁତି କରି ସାରିଛି ନା, ସେତିକି ପ୍ରସ୍ତୁତି କରି ରଖିଥିଲା । ଉଭୟ ପାର୍ଶ୍ୱରୁ ପୁରା ପ୍ରସ୍ତୁତି ! ସେ ତ ମତଭେଦ ସୃଷ୍ଟି କରିବାର ହିଁ ପ୍ରସ୍ତୁତି କରି ରଖିଥିଲା । ସେ ଝଗଡ଼ା କରେ, ତା ପୂର୍ବରୁ ହିଁ ଏ ବମ୍ ଫୁଟେଇ ଦେବି ! ସେ ଏମିତି ଜଳେଇବ ତେବେ ମୋତେ ଏମିତି ଜଳାଇବାର ଅଛି । ଅତଃ ସେଠାକୁ ଯିବା ପୂର୍ବରୁ ହିଁ ଦଙ୍ଗା କରିବାକୁ ପ୍ରସ୍ତୁତ ! ସେ ଏପଟେ ତୀର ଛାଡ଼ିବ ତେବେ ମୋତେ ସେପଟେ ରକେଟ ଛାଡ଼ିବାର ଅଛି । ମୁଁ କହିଲି, 'ଏ ତ ତୁ କୋଲ୍ଡ ୱାର ଆରମ୍ଭ କରିଦେଲୁ । ତାହା କେବେ ଶାନ୍ତ ହେବ ?' କୋଲ୍ଡୱାର (ଶୀତଳ ଯୁଦ୍ଧ) ବନ୍ଦ ହୁଏ ? ଏ ଦେଖ ନା, ବଡ଼ ସାମ୍ରାଜ୍ୟବାଲାଙ୍କର କେଉଁଠି ବନ୍ଦ ହେଉଛି, ରୁଷିଆ-ଆମେରିକାର ?

ଏ ଝିଅମାନେ ଏମିତି ସବୁ ଭାବନ୍ତି, ସବୁ ପ୍ରବନ୍ଧ କରିଦିଅନ୍ତି ଏହିପରି । ଏ ପୁଅମାନେ ତ ବିଚରା ଭୋଳା ! ପୁଅମାନେ ଏପରି ସବୁ କରନ୍ତି ନାହିଁ ଆଉ ସେହି ଘଡ଼ି ମାଡ଼ ଖାଇଯାନ୍ତି, ଭୋଳା ଅଟନ୍ତି ନା !

ଏ ତୁମେ ଯେଉଁ କହୁଛ ନା, ପ୍ରପଞ୍ଚ ସାମ୍ନାରେ କ'ଣ ପ୍ରସ୍ତୁତି କରିବା ଉଚିତ ? କିନ୍ତୁ ସେ ଝିଅ ସମସ୍ତ ପ୍ରସ୍ତୁତି କରି ରଖିଥିଲା, ବମ୍ବାର୍ଡିଙ୍ଗ (ବୋମା ବର୍ଷଣ) କେତେବେଳେ ଆଉ କେମିତି କରିବି ! ସେ ଏମିତି କୁହେ ତେବେ ଆଟାକ୍(ଆକ୍ରମଣ), ସେମିତି କୁହେ ତେବେ ଏମିତି ଆଟାକ୍ । 'ସମସ୍ତ ପ୍ରସ୍ତୁତି କରି ରଖିଛି କହୁଥିଲା !' ପୁଣି ମଝିରେ ମୁଁ ତା'କୁ କହିଲି, 'ଏ ସବୁ ତୋତେ କିଏ ଶିଖାଇଛି ? ଘରୁ ବାହାର କରିଦେବ ଏବଂ ତଲାକ୍ ଦେଇଦେବ !' ତଲାକ୍ ଦେଇଦେବ ନା ନାହିଁ ? ମୁଁ କହିଦେଲି ଏହିଭଳି ତ ଛଅ ମାସରେ ତଲାକ୍ ହୋଇଯିବ, ତୋତେ ତଲାକ୍ ନେବାର ଅଛି ? ଏ ଉପାୟ ଠିକ୍ ନୁହେଁ । ପୁଣି ମୁଁ ତା'କୁ କହିଲି, 'ତୋତେ ତଲାକ୍ ନ ଦେଉ, ସେଥିପାଇଁ ମୁଁ ତୋତେ ଏସବୁ ଶିଖାଉଛି ।'

ଏହା ଶୁଣି ମୋତେ କହୁଛି, 'ଦାଦାଜୀ ଏପରି ନ କରିବି ତେବେ କ'ଣ କରିବି ? ନହେଲେ ସେ ତ ମୋତେ ଦବେଇ ଦେବ ।' ମୁଁ କହିଲି, 'ସେ କ'ଣ ଦବେଇବ ? ବିଚରା ନଟୁ ! ସେ ତୋତେ କ'ଣ ଦବେଇବ ?'

ପରେ ମୁଁ ପଚାରିଲି, 'ଭଉଣୀ, ମୋ କଥା ମାନିବୁ ? ତୋତେ ସୁଖୀ ହେବାର

ଅଛି ନା ଦୁଃଖୀ ହେବାର ଅଛି ? ନହେଲେ ଯେଉଁ ସ୍ତ୍ରୀମାନେ ସବୁ ପ୍ରସ୍ତୁତି କରି ପତି ପାଖକୁ ଯାଇଥିଲେ, ସେମାନେ ଅନ୍ତରେ ଦୁଃଖୀ ହୋଇଛନ୍ତି । ତୁ ମୋ କହିବା ଅନୁସାରେ ଯା, କୌଣସି ବି ପ୍ରସ୍ତୁତି ବିନା ଯା ।' ପୁଣି ତା'କୁ ବୁଝାଇଲି ।

ଘରେ ସବୁଦିନ କ୍ଳେଶ ହେବ ତେବେ ଓକିଲ କହିବ, 'ଛାଡ଼, ଯା ଠୁ ଭଲ ତ ଆଉ ଗୋଟେ ଆଣିବି ।' ସେଥିରେ ପୁଣି ଏ ଟିଟ୍ ଫର୍ ଟ୍ୟାଟ୍(ଯେସାକୁ ତେସା) ହେବ । ଯେଉଁଠି ପ୍ରେମର ସୌଦା କରିବାର ଅଛି ସେଠି ଏସବୁ ? କାହାର ସୌଦା କରିବାର ଅଛି ?

**ପ୍ରଶ୍ନକର୍ତ୍ତା :** ପ୍ରେମର ।

**ଦାଦାଶ୍ରୀ :** ପ୍ରେମର ! ପଛେ ଆସକ୍ତିରୁ ହେଉ କିନ୍ତୁ କିଛି ତ ପ୍ରେମ ଭଳି ଅଟେ ନା ! ତା' ଉପରେ ଦ୍ୱେଷ ତ ହେଉନାହିଁ ନା ! ମୁଁ କହିଲି, 'ଏପରି କରନ୍ତି ନାହିଁ । ତୁ ଶିକ୍ଷିତ ଅଟୁ ସେଥିପାଇଁ ଏଭଳି ପ୍ରସ୍ତୁତି କରି ରଖିଛୁ ? ଏହା କ'ଣ ଓ୍ୱାର୍(ଯୁଦ୍ଧ) ଅଟେ ? ଏହା କ'ଣ ହିନ୍ଦୁସ୍ତାନ ଆଉ ପାକିସ୍ତାନର ଓ୍ୱାର୍ ? ସଂସାରରେ ସମସ୍ତେ ଏହା ହିଁ କରୁଛନ୍ତି । ଏ ପୁଅ ଝିଅ ସମସ୍ତେ ଏହା ହିଁ କରୁଛନ୍ତି । ପୁଣି ଉଭୟଙ୍କ ଜୀବନ ନଷ୍ଟ ହୋଇଯାଏ ।' ପୁଣି ତା'କୁ ସବୁ ପ୍ରକାର ବୁଝାଇଲି ।

ପତି ସହ ଏହିପରି ବ୍ୟବହାର କରିବା ଉଚିତ । ଏହିପରି ଅର୍ଥାତ ସେ ତେଢ଼ା ଚାଲେ ତେବେ ତୁ ସିଧା ଚାଲିବୁ । ତା'ର ସମାଧାନ ଆଣିବା ଉଚିତ, ଉପାୟ କରିବା ଉଚିତ । ସେ ଝଗଡ଼ା କରିବାକୁ ପ୍ରସ୍ତୁତ ହୋଇଯାଏ ସେତେବେଳେ ଆମକୁ ଏକତା ରଖିବା ଉଚିତ । ସେ ଦୂରେଇ ରୁହେ ତେବେ ମଧ୍ୟ ଆମକୁ ଏକତା ରଖିବା ଉଚିତ । ସେ ବାରମ୍ବାର ଅଲଗା ହେବା କଥା କରେ ତେବେ ମଧ୍ୟ କହିବୁ 'ଆମେ ଏକ ।' କାହିଁକିନା ଏସବୁ ରିଲେଟିଭ ସମ୍ବନ୍ଧ ଅଟେ । ସେ ରିସ୍ତା କାଟି ଦେବ ଆଉ ତୁ ବି କାଟି ଦେବୁ ତେବେ ଭାଙ୍ଗିଯିବ କାଲି ସକାଳେ । ଅର୍ଥାତ୍ ତଲାକ୍ ଦେଇଦେବ । ସେତେବେଳେ ପଚାରିଲା, 'ମୋତେ କ'ଣ କରିବା ଉଚିତ ?' ମୁଁ ତା'କୁ ବୁଝାଇଲି, ତାଙ୍କ ମୁଡ୍ ଦେଖି ବ୍ୟବହାର କରିବାକୁ କହିଲି, ଯେତେବେଳେ ମୁଡ୍‌ରେ ନଥିବେ ସେତେବେଳେ ତୁ ମନରେ 'ଆଲ୍ଲାହ'ଙ୍କ ନାମ ନେଉଥିବୁ ଆଉ ମୁଡ୍ ଠିକ୍ ହେବ ସେତେବେଳେ ତାଙ୍କ ସହ କଥାବାର୍ତ୍ତା ଆରମ୍ଭ କରିବୁ । ସେ ମୁଡ୍‌ରେ ନଥିବେ ଆଉ ତୁ ବିରକ୍ତ କରିବୁ ତେବେ ନିଆଁ ଲାଗିଯିବ ।

ତୋତେ ତାଙ୍କୁ ନିର୍ଦ୍ଦୋଷ ଦେଖିବାର ଅଛି । ସେ ତୋତେ ଓଲଟା-ସିଧା କହିଲେ ମଧ୍ୟ ତୁ ଶାନ୍ତ ରହିବୁ । ପ୍ରକୃତ ପ୍ରେମ ଥିବା ଦରକାର । ଆସକ୍ତିରେ ତ ଛଅ-

ବାର ମାସରେ ପୁଣି ଭାଙ୍ଗି ହିଁ ଯିବ। ପ୍ରେମରେ ସହନଶୀଳତା ଥିବା ଦରକାର, ଏଡ଼ଜଷ୍ଟେବଲ ହେବା ଦରକାର।

ମଶ୍‌ରୁର୍ କୁ ମୁଁ ଏମିତି ପଢ଼େଇ ଦେଲି। ମୁଁ କହିଲି, 'ତୁ କିଛି ବି କରିବୁ ନାହିଁ, ଯେବେ ସେ ଏପଟେ ତୀର ଚଲାଏ ସେତେବେଳେ ନିଜ ସ୍ଥିରତା ରଖି 'ଦାଦା, ଦାଦା' କରି ଚାଲିବୁ। ପୁଣି ସେପଟୁ ତୀର ଚଲାଏ ସେତେବେଳେ ସ୍ଥିରତା ରଖି 'ଦାଦା, ଦାଦା' କରିବୁ। ତୁ ଗୋଟିଏ ବି ତୀର ଚଲାଇବୁ ନାହିଁ। ପୁଣି ମୁଁ ବିଧି କରିଦେଲି।

ପରେ ପଚାରିଲି, 'ତୋ ଶ୍ୱଶୁର ଘରେ କିଏ-କିଏ ଅଛନ୍ତି?' ତେବେ କହିଲା, 'ମୋ ଶାଶୁ ଅଛି।' 'ଶାଶୁ ସହ ତୁ କିପରି ଏଡ଼ଜଷ୍ଟମେଣ୍ଟ କରିବୁ? ତେବେ କୁହେ, 'ତା'ର ବି ମୁଁ ସାମ୍ନା କରିନେବି।'

ପୁଣି ମୁଁ ତା'କୁ ବୁଝାଇଲି। ପରେ ସେ କହିଲା, 'ହଁ, ଦାଦାଜୀ, ମୋତେ ଏ ସବୁକଥା ପସନ୍ଦ ଆସିଲା।' 'ତୁ ଏହିପରି କରିବୁ ତେବେ ତଲାକ୍ ଦେବ ନାହିଁ ଏବଂ ଶାଶୁ ସହିତ ମେଳ ରହିବ।' ପୁଣି ସେ ମୋତେ ଏକ ଚନ୍ଦନର ମାଳା ପିନ୍ଧାଇଲା। ମୁଁ କହିଲି, 'ଏହି ମାଳା ତୁ ନେଇଯିବୁ ଏବଂ ତୋ ସାଥିରେ ରଖିବୁ। ମାଳାର ଦର୍ଶନ କରିବା ପରେ ପତି ସହ ନିଜ ବ୍ୟବହାର ଚଲେଇବୁ, ତେବେ ବହୁତ ସୁନ୍ଦର ଚାଲିବ। ସେ ସେହି ମାଳି ଆଜି ବି ନିଜ ପାଖରେ ରଖିଛି।'

ତା'କୁ ଚରିତ୍ରବଳର କଥା କହିଥିଲି ଯେ 'ପତି ତୋତେ କିଛି ବି କହେ, କିଛି ବି କରେ, ତଥାପି ତୁ ମୌନ ଧାରଣ କରି, ଶାନ୍ତ ଭାବରେ ରହିବୁ, ତେବେ ତୋ ଠାରେ ଚରିତ୍ରବଳ ଉତ୍ପନ୍ନ ହେବ ଏବଂ ତାହାର ପ୍ରଭାବ ତା'ଉପରେ ପଡ଼ିବ। ଓକିଲ ହୋଇଥିଲେ ମଧ୍ୟ। ସେ ଯେଭଳି ମଧ୍ୟ ଗାଳିକରୁ, ସେତେବେଳେ 'ଦାଦା'ଙ୍କ ନାମ ନେବୁ ଏବଂ ସ୍ଥିର ରହିବୁ। ତା' ମନରେ ଏପରି ହେବ ଯେ ଏ କେମିତିକା ସ୍ତ୍ରୀ! ଏ ତ ହାର ହିଁ ମାନୁ ନାହିଁ! ପରେ ସେ ହାରିଯିବ!' ପୁଣି ସେ ଏହିଭଳି ହିଁ କଲା, ଝିଅ ହିଁ ସେମତି ଥିଲା। ଦାଦାଙ୍କ ଭଳି ଶିଖାଇବାବାଲା ମିଳିଯିବେ ତେବେ ପୁଣି କ'ଣ ବାକି ରହିଲା ଏବେ! ନହେଲେ ପ୍ରଥମେ ଏଡ଼ଜଷ୍ଟମେଣ୍ଟ ଏମିତି ଥିଲା, ରୁଷିଆ ଏବଂ ଆମେରିକା ଭଳି। ସେଠି ସ୍ୱିଚ୍ ଦବାଇବା ମାତ୍ରେ ଜଳିଉଠେ ସବୁ। କ'ଣ ଏହା ମାନବତା ଅଟେ? କାହିଁକି ଡରୁଛ? ଜୀବନ କ'ଣ ପାଇଁ ଅଟେ? ଯେତେବେଳେ ସଂଯୋଗ ହିଁ ଏମିତି, ତେବେ ପୁଣି କ'ଣ କରିବା?

ସେ ଯେଉଁମାନେ ଜିତିବାର ପ୍ରସ୍ତୁତି କରନ୍ତି ନା, ଏହାଦ୍ୱାରା ଚରିତ୍ରବଳ

'ଲୁଜ୍' (କମଜୋର, ଢିଲା) ହୋଇଯାଏ । ମୁଁ ଏପରି କୌଣସି ପ୍ରକାରର ପ୍ରସ୍ତୁତି କରେ ନାହିଁ । ଚରିତ୍ରର ଉପଯୋଗ, ଯାହାକୁ ତୁମେ ପ୍ରସ୍ତୁତି କହୁଛ, କିନ୍ତୁ ତାହାଦ୍ୱାରା ତୁମଠାରେ ଯେଉଁ ଚରିତ୍ରବଳ ଅଛି ତାହା 'ଲୁଜ୍' ହୋଇଯାଏ ଆଉ ଯଦି ଚରିତ୍ରବଳ ଖତମ ହୋଇଯିବ, ତେବେ ତୋ ପତି ସାମ୍ନାରେ ତୋର ମୂଲ୍ୟ ହିଁ ରହିବ ନାହିଁ । ଏହିପରି ସେ ଝିଅ ମୁଣ୍ଡରେ ଭଲ ଭାବରେ ବସିଗଲା । ପରେ ମୋତେ କହିଲା ଯେ 'ଦାଦାଜୀ, ଏବେ ମୁଁ କୌଣସି ଦିନ ହାରିବି ନାହିଁ, ଏପରି ଗ୍ୟାରେଣ୍ଟି ଦେଉଛି ।'

ନିଜ ସହ କେହି ପ୍ରପଞ୍ଚ(ଷଡ଼ଯନ୍ତ୍ର) କରେ ଆଉ ଜବାବରେ ଆମେ ବି ସେହିପରି କରିବା ତେବେ ଆମର ଚରିତ୍ରବଳ ଭାଙ୍ଗିଯିବ । କେହି କେତେ ବି ପ୍ରପଞ୍ଚ କରୁ କିନ୍ତୁ ନିଜ ପ୍ରପଞ୍ଚରେ ନିଜେ ହିଁ ସେଥିରେ ଫଶିଯାଏ । କିନ୍ତୁ ଯଦି ତୁମେ ପ୍ରସ୍ତୁତି କରିବାକୁ ଯିବ, ତେବେ ତୁମେ ନିଜେ ତା' ପ୍ରପଞ୍ଚରେ ଫଶିଯିବ । ମୋ ସାମ୍ନାରେ ତ ବହୁତ ଲୋକ ଷଡ଼ଯନ୍ତ୍ର କରିଥିଲେ କିନ୍ତୁ ସେ ଷଡ଼ଯନ୍ତ୍ର କରିବାବାଲା ଫଶି ଯାଇଥିଲେ । କାରଣ ମୋତେ ଗୋଟିଏ କ୍ଷଣ ପାଇଁ ମଧ୍ୟ ସେହି ବିଷୟରେ କିଛି ବିଚାର ହିଁ ଆସେ ନାହିଁ । ନହେଲେ ଯଦି ତାହାର ସାମ୍ନା କରିବା ପାଇଁ ପ୍ରସ୍ତୁତି କରିବାର ବିଚାର ବି ଆସେ ନା, ତେବେ ମଧ୍ୟ ନିଜର ଚରିତ୍ରବଳ ଭାଙ୍ଗିଯାଏ, ଶୀଳବାନପଣ ଭାଙ୍ଗିଯାଏ ।

ଶୀଳବାନ ମାନେ କ'ଣ ? ନା, ସେ ଗାଳି କରିବା ପାଇଁ ଆସେ କିନ୍ତୁ ଏଠି ଆସି ଚୁପ ହୋଇ ବସିଯାଏ । ଆମେ କହିବା, 'କିଛି କୁହନ୍ତୁ, କୁହନ୍ତୁ', କିନ୍ତୁ ସେ ଏକ ଅକ୍ଷର ବି କହିପାରେ ନାହିଁ । ତାହା ଶୀଳର ପ୍ରଭାବ ଅଟେ ! ଯଦି ଆମେ ଏକ ଅକ୍ଷର ବି ସାମ୍ନାରୁ କହିବା ପାଇଁ ପ୍ରସ୍ତୁତି କରିବା ନା, ତେବେ ଶୀଳ ଭାଙ୍ଗିଯାଏ । ଏଣୁ ପ୍ରସ୍ତୁତି କରିବ ନାହିଁ । ଯାହାକୁ ଯାହା କହିବାର ଅଛି କହୁ । 'ସର୍ବତ୍ର ମୁଁ ହିଁ ଅଛି' କହିବ । (ଆତ୍ମ ସ୍ୱରୁପରେ ସମସ୍ତଙ୍କ ସହ ଅଭେଦ ଅଟେ ।)

ଷଡ଼ଯନ୍ତ୍ର ସାମ୍ନାରେ ପ୍ରସ୍ତୁତି କରିବାରେ ଆମକୁ ନୂଆ ଷଡ଼ଯନ୍ତ୍ର ସୃଷ୍ଟି କରିବାକୁ ପଡ଼େ ଏବଂ ଆମେ ସ୍ଲିପ୍(ଖସଡ଼ିଯିବା) ହୋଇଯାନ୍ତି । ଏବେ ଆମ ପାଖରେ ସେ ଶସ୍ତ୍ର ହିଁ ନାହିଁ ନା ! ତା' ପାଖରେ ତ ସେ ଶସ୍ତ୍ର ଅଛି, ଏଣୁ ପଛେ ସେ ଚଲାଉ ! କିନ୍ତୁ ତାହା 'ବ୍ୟବସ୍ଥିତ' ଅଟେ ନା ! ସେଥିପାଇଁ ଶେଷରେ ତା'ର ଶସ୍ତ୍ର ତା'କୁ ହିଁ ଲାଗେ, ଏପରି 'ବ୍ୟବସ୍ଥିତ' ଅଟେ ।

ତା'କୁ ଭଲ ଭାବରେ ବୁଝା ପଡ଼ିଗଲା । ଦାଦାଜୀ ଡ୍ରଇଂ କରିଦେଲେ । ମୋତେ କହିଲା, 'ଏପରି ଡ୍ରଇଂ କହିବାକୁ ଚାହୁଁଛନ୍ତି ?' ମୁଁ କହିଲି, 'ହଁ, ଏହିପରି ଡ୍ରଇଂ ।'

ପୁଣି ଝିଅ ତା' ମା-ବାପାଙ୍କୁ ଏସବୁ କହିଲା । ତା' କଥା ଶୁଣି ତା' ବାପା ଯିଏ ଡକ୍ଟର ଥିଲେ, ସେ ଦର୍ଶନ କରିବାକୁ ଆସିଲେ ।

ଦେଖ, ଏପରି ଦାଦାଜୀଙ୍କୁ କିଛି ଡେରି ଲାଗେ ? ମଶରୁର୍ ଏଠାକୁ ଆସିବା ଉଚିତ ! ଆସିଗଲା ତେବେ ଅପରେଶନ୍ ହୋଇଗଲା ଫଟାଫଟ ! ଦେଖ, ସେଠାରେ ସର୍ବଦା ଦାଦାଜୀ ଦାଦାଜୀ ସବୁଦିନ ମନେ ପକାଉଛି ନା !

ସମସ୍ତଙ୍କର କାମ ହୋଇଯାଏ । ମୋର ଗୋଟିଏ ଗୋଟିଏ ଶବ୍ଦ ତୁରନ୍ତ ସମାଧାନ ଆଣିବ । ତାହା ଅନ୍ତରେ ମୋକ୍ଷ ପର୍ଯ୍ୟନ୍ତ ନେଇଯାଏ ! ତୁମେ କେବଳ 'ଏଡ଼ଜଷ୍ଟ ଏଭ୍ରିହ୍ୱେୟର' କରିଚାଲ ।

## (୧୯) ସଂସାରରେ ସୁଖର ସାଧନା, ସେବାଦ୍ୱାରା

ଯେଉଁ ବ୍ୟକ୍ତି ମାତା-ପିତାଙ୍କ ଦୋଷ ଦେଖେ, ତା'ର କେବେ ବି ଭଲଦିନ ଆସେ ନାହିଁ । ସମ୍ଭବତଃ ପଇସାବାଲା ହୋଇପାରେ, କିନ୍ତୁ ତା'ର ଆଧ୍ୟାତ୍ମିକ ଉନ୍ନତି କେବେ ବି ହୁଏ ନାହିଁ । ମାତା-ପିତାଙ୍କ ଦୋଷ ଦେଖିବା ଉଚିତ ନୁହେଁ । ତାଙ୍କ ଉପକାର ତ ଭୁଲିପାରିବା କିପରି ? କେହି ଚାହା ପିଆଇଥିବ ତେବେ ମଧ୍ୟ ତା'ର ଉପକାର ଭୁଲୁ ନାହାନ୍ତି, ତେବେ ପୁଣି ଆମେ ମାତା-ପିତାଙ୍କ ଉପକାର କିପରି ଭୁଲାଇ ପାରିବା ?

ତୁ ବୁଝିଗଲୁ ? ହଁ, ଅର୍ଥାତ ତୋତେ ସେମାନଙ୍କର ଉପକାର ମାନିବା ଉଚିତ, ମାତା-ପିତାଙ୍କ ବହୁତ ସେବା କରିବା ଉଚିତ । ସେମାନେ ଓଲଟା-ସିଧା କହିବେ ତେବେ ଧ୍ୟାନରେ ନନେବା ଉଚିତ । ସେମାନେ ଓଲଟା-ସିଧା କହିଲେ ଇଗ୍ନୋର କରିବ, କାହିଁକିନା ସେମାନେ ବଡ଼ ନା ! କ'ଣ ସେତେବେଳେ ତୋତେ ବି ଓଲଟା-ସିଧା କହିବା ଉଚିତ ?

**ପ୍ରଶ୍ନକର୍ତ୍ତା :** ନା, କହିବା ଉଚିତ ନୁହେଁ । କିନ୍ତୁ କହିଦିଆଯାଏ ତାହାର କ'ଣ ? ଭୁଲ ହୋଇଯାଏ ତେବେ କ'ଣ କରାଯିବ ?

**ଦାଦାଶ୍ରୀ :** ହଁ, କାହିଁକି ଖସିଡ଼ି ଯାଉନାହଁ ? କାହିଁକି ନା ସେଠି ଜାଗୃତ ରହୁଛ ଆଉ ଯଦି ପାଟିରୁ ଖସିଗଲା ତେବେ ପିତାଜୀ ମଧ୍ୟ ବୁଝିଯିବେ ଯେ ଏ ବିଚରା ସ୍ଲିପ ହୋଇଗଲା । ଏ ତ ଜାଣି ଶୁଣି ତୁ ଏପରି କରିବାକୁ ଯିବୁ, ତେବେ 'ତୁ ଏଠି କାହିଁକି ସ୍ଲିପ କଲୁ ?' ତାହାର ଜବାବ ମୁଁ ମାଗୁଛି । ଠିକ୍ ଅଟେ ନା ଭୁଲ ? ଯଥା ସମ୍ଭବ ଏପରି ନହେବା ଉଚିତ, ତଥାପି ଯଦି ତୋ ଦ୍ୱାରା ଏପରି କିଛି ହୋଇଯାଏ ତେବେ

ସମସ୍ତେ ବୁଝିଯିବେ ଯେ 'ଇଏ ଏପରି କରି ନପାରେ ।'

ମାତା-ପିତାଙ୍କୁ ଖୁସିରେ ରଖିବୁ । ସେମାନେ ତୋତେ ଖୁସି ରଖିବାର ପ୍ରୟାସ କରୁଛନ୍ତି ନା ନାହିଁ ? ତୋତେ ସୁଖୀ ରଖିବାର ଇଚ୍ଛା ଅଛି କି ନାହିଁ ସେମାନଙ୍କୁ ?

**ପ୍ରଶ୍ନକର୍ତ୍ତା :** ହଁ, କିନ୍ତୁ ଦାଦାଜୀ, ମୋତେ ଏପରି ଲାଗୁଛି ଯେ ସେମାନଙ୍କୁ କିଚ୍-କିଚ୍ କରିବାର ଅଭ୍ୟାସ ହୋଇଗଲାଣି ।

**ଦାଦାଶ୍ରୀ :** ହଁ, କିନ୍ତୁ ସେଥିରେ ତୋର ଭୁଲ, ଭୁଲ ତୋର ଅଟେ, ଏଣୁ ମାତା-ପିତାଙ୍କୁ ଯେଉଁ ଦୁଃଖ ହେଲା ତାହାର ପ୍ରତିକ୍ରମଣ କରିବା ଉଚିତ । ସେମାନଙ୍କୁ ଦୁଃଖ ନହେବା ଉଚିତ, 'ମୁଁ ସୁଖ ଦେବା ପାଇଁ ଆସିଛି' ଏପରି ତୁମ ମନରେ ହେବା ଉଚିତ । 'ମୋର ଏମିତି କ'ଣ ଭୁଲ ହେଲା' ଯେ ମାତା-ପିତାଙ୍କୁ ଦୁଃଖ ହେଲା ।

ବାପା ଖରାପ ଲାଗୁ ନାହାନ୍ତି ? ସେ ଖରାପ ଲାଗିବେ ତେବେ କ'ଣ କରିବୁ ? ବାସ୍ତବରେ ଖରାପ ଭଳି ଏ ଦୁନିଆରେ କିଛି ହିଁ ନାହିଁ । ଯାହା କିଛି ବି ଆମକୁ ମିଳିଛି, ସେ ସବୁ ଭଲ ଜିନିଷ ହୋଇଥାଏ କାହିଁକି ନା ଆମ ପ୍ରାରବ୍ଧ ଅନୁସାରେ ମିଳିଛି । ମା ମିଳିଛି, ସେ ମଧ୍ୟ ଭଲ । କେତେ ବି କାଳି ହେଉ, ତଥାପି ନିଜ ମା ହିଁ ଭଲ । କାହିଁକିନା ପ୍ରାରବ୍ଧ ଅନୁସାରେ ଆମକୁ ଯାହା ମିଳିଛି ତାହା ଭଲ । କ'ଣ ବଦଳେଇ ଆଉ ଗୋଟେ ଆଣି ପାରିବା ?

**ପ୍ରଶ୍ନକର୍ତ୍ତା :** ନା ।

**ଦାଦାଶ୍ରୀ :** ବଜାରରେ ଅଲଗା ମା ମିଳୁନାହିଁ ? ଆଉ ମିଳିଲେ ବି କେଉଁ କାମର ? ଗୋରୀ ପସନ୍ଦ ହେଉଥିବ ତଥାପି ଆମ ପାଇଁ କେଉଁ କାମର ? ଏବେ ଯିଏ ଅଛି, ସେ ଭଲ । ଅନ୍ୟ ମାନଙ୍କର ଗୋରୀ ମା ଦେଖି 'ମୋର ଖରାପ' ଏପରି କହିବା ଉଚିତ ନୁହେଁ । 'ମୋ ମା ତ ବହୁତ ଭଲ' ଏପରି କହିବା ଉଚିତ ।

**ପ୍ରଶ୍ନକର୍ତ୍ତା :** ପାପାଙ୍କର କ'ଣ ମାନିବା ଉଚିତ ?

**ଦାଦାଶ୍ରୀ :** ପାପାଙ୍କର ? ସେ ଯେଉଁଥିରେ ଖୁସି ରହିବେ, ସେହିପରି ବ୍ୟବହାର ତାଙ୍କ ସହ କରିବ । ଖୁସି ରଖିବା ଆସୁନାହିଁ ? ସେ ଖୁସି ରହିବେ ଏପରି କରିବ ।

ମାତା-ପିତା ଅର୍ଥାତ ମାତା-ପିତା । ଏହି ସଂସାରରେ ସର୍ବପ୍ରଥମ ସେବା କରିବା ଯୋଗ୍ୟ ଯଦି କେହି ଥିବେ ତେବେ ସେ ମାତା-ପିତା ଅଟନ୍ତି । ତାଙ୍କର ସେବା କରିବୁ ?

**ପ୍ରଶ୍ନକର୍ତ୍ତା :** ହଁ, ସେବା ଜାରି ରହିଛି । ଘର କାମରେ ସାହାଯ୍ୟ କରୁଛି ।

**ଦାଦାଶ୍ରୀ :** ଶାନ୍ତି ପାଇଁ କ'ଣ କରିବ? ଜୀବନରେ ଶାନ୍ତି ଆଣିବାର ଅଛି ନା ନାହିଁ?

**ପ୍ରଶ୍ନକର୍ତ୍ତା :** ଆଣିବାର ଅଛି ।

**ଦାଦାଶ୍ରୀ :** ଆଣି ଦେବି, କିନ୍ତୁ କେବେ ମାତା-ପିତାଙ୍କ ସେବା କରିଛୁ? ମାତା-ପିତାଙ୍କ ସେବା କଲେ ଶାନ୍ତି ଯାଏ ନାହିଁ । କିନ୍ତୁ ଆଜିକାଲି ସଚ୍ଚା ଦିଲ୍‌ରେ ମାତାପିତାଙ୍କର ସେବା କରୁନାହାନ୍ତି । ପଚିଶ-ତିରିଶ ବର୍ଷର ହେଲା ଆଉ 'ଗୁରୁ'(ପତ୍ନୀ) ଆସିଲେ, ତେବେ ସେ କୁହେ ଯେ 'ମୋତେ ନୂଆ ଘରକୁ ନେଇଯାଅ ।' ତୁମେ 'ଗୁରୁ' ଦେଖିଛ ? ପଚିଶ-ତିରିଶ ବର୍ଷ ବୟସରେ ଗୁରୁ ମିଳିଯାନ୍ତି ଏବଂ 'ଗୁରୁ' ମିଳବା ପରେ ସବୁକିଛି ବଦଳିଯାଏ । ଗୁରୁ କହେ ଯେ 'ମାଆଙ୍କୁ ତୁମେ ଚିହ୍ନି ହିଁ ନାହଁ ।' ସେ ପ୍ରଥମ ଥର ଧ୍ୟାନ ଦିଏ ନାହିଁ । ପ୍ରଥମଥର ତ ଶୁଣେ ନାହିଁ, କିନ୍ତୁ ଦୁଇ-ତିନିଥର କହିବା ଦ୍ୱାରା ପୁଣି ଧୀରେ-ଧୀରେ ସେ ଭ୍ରମିତ ହୋଇଯାଏ ।

ଯିଏ ଶୁଦ୍ଧ ଭାବରେ ମାତା-ପିତାଙ୍କ ସେବା କରନ୍ତି, ସେମାନଙ୍କୁ କେବେ ଅଶାନ୍ତି ହେବ ନାହିଁ, ଏପରି ଅଟେ ଜଗତ । ଏହି ଜଗତ ଅଣଦେଖା କରିବା ଭଳି ନୁହେଁ । ସେତେବେଳେ ଲୋକେ ପ୍ରଶ୍ନ କରନ୍ତି ଯେ ପୁଅର ହିଁ ଦୋଷ ନା ! ପୁଅମାନେ ମାତା-ପିତାଙ୍କ ସେବା କରୁନାହାନ୍ତି, ସେଥିରେ ମାତା-ପିତାଙ୍କ କ'ଣ ଦୋଷ ? ମୁଁ କହିଲି, 'ସେମାନେ ମାତା-ପିତାଙ୍କ ସେବା କରିନଥିଲେ, ସେଥିପାଇଁ ସେମାନଙ୍କୁ ପ୍ରାପ୍ତ ହେଉନାହିଁ ।' ଅର୍ଥାତ ଏହି ପରମ୍ପରା ହିଁ ଭୁଲ ଅଟେ । ଏବେ ନୂଆ ରୂପରେ ପରମ୍ପରାରୁ ହଟିକି ଚାଲିବା ତେବେ ଭଲ ହେବ ।

ବୟୋଜ୍ୟେଷ୍ଠଙ୍କ ସେବା କରିବା ଦ୍ୱାରା ଆମ ବିଜ୍ଞାନରେ ଆଗକୁ ବଢ଼େ । କ'ଣ ମୂର୍ତ୍ତିମାନଙ୍କର ସେବା କରାଯାଇପାରେ ? ମୂର୍ତ୍ତିମାନଙ୍କର କ'ଣ ଗୋଡ଼ ବିନ୍ଧେ ? ସେବା ତ, ଅଭିଭାବକ, ବୟୋଜ୍ୟେଷ୍ଠ ଅଥବା ଗୁରୁଜନ ହୋଇଥିବେ, ସେମାନଙ୍କର କରିବା ଉଚିତ ।

ମାତା-ପିତାଙ୍କ ସେବା କରିବା ଧର୍ମ ଅଟେ । ହିସାବ କିଭଳି ମଧ୍ୟ ହେଉ କିନ୍ତୁ ସେବା କରିବା ଆମର ଧର୍ମ । ଯେତିକି ନିଜ ଧର୍ମର ପାଳନ କରିବା, ଆମକୁ ସେତିକି ହିଁ ସୁଖ ଉତ୍ପନ୍ନ ହେବ । ବୟୋଜ୍ୟେଷ୍ଠଙ୍କ ସେବା ତ ହେବ, କିନ୍ତୁ ସାଥେ ସାଥେ ଆମକୁ ସୁଖ ଉତ୍ପନ୍ନ ହେବ । ମାତା-ପିତାଙ୍କୁ ସୁଖ ଦେବା, ତେବେ ଆମକୁ ସୁଖ ମିଳିବ । ମାତା-ପିତାଙ୍କ ସେବା କରୁଥିବା ମଣିଷ କେବେ ଦୁଃଖୀ ରହେ ନାହିଁ ।

ଏକ ବଡ଼ ଆଶ୍ରମରେ ମୋତେ ଜଣେ ଭାଇ ଭେଟ ହେଲେ । ମୁଁ ତାଙ୍କୁ ପଚାରିଲି, 'ତୁମେ ଏଠି କେମିତି ?' ସେ କହିଲେ, 'ମୁଁ ଏହି ଆଶ୍ରମରେ ବିଗତ ଦଶ ବର୍ଷ ହେଲାଣି ରହୁଛି ।' ମୁଁ ତାଙ୍କୁ କହିଲି, 'ତୁମ ମାତା-ପିତା ଗାଁରେ ଅନ୍ତିମ ଅବସ୍ଥାରେ ବହୁତ ଗରିବୀରେ ଦୁଃଖୀ ହେଉଛନ୍ତି ।' ତେବେ ସେ କହିଲେ, 'ସେଥିରେ ମୁଁ କ'ଣ କରିବି ? ମୁଁ ସେମାନଙ୍କ ଆଡ଼କୁ ଧ୍ୟାନ ଦେବି, ତେବେ ମୋ ଧର୍ମ ରହିଯିବ ।' ଏହାକୁ ଧର୍ମ କିପରି କହିବା ? ଧର୍ମ ତ ତାହା ଯେ ମାତା-ପିତାଙ୍କ ଖବର ରଖେ, ଭାଇମାନଙ୍କ ସହ ଭଲ ବ୍ୟବହାର କରେ, ସମସ୍ତଙ୍କ ସହ ଭଲ ବ୍ୟବହାର କରେ । ବ୍ୟବହାର ଆଦର୍ଶ ହେବା ଉଚିତ । ଯେଉଁ ବ୍ୟବହାର ନିଜ ଧର୍ମର ତିରସ୍କାର କରେ, ମାତା-ପିତାଙ୍କ ସମ୍ବନ୍ଧକୁ ମଧ୍ୟ ତିରସ୍କାର କରେ, ତାହାକୁ ଧର୍ମ କିପରି କହିପାରିବା ?

ମୁଁ ବି ମା'ର ସେବା କରିଥିଲି । ମୋତେ କୋଡ଼ିଏ ବର୍ଷ ବୟସ ହୋଇଥିଲା । ଅତଃ ମାତାଜୀଙ୍କ ସେବା ହେଲା । ପିତାଜୀଙ୍କୁ କାନ୍ଧ ଦେଇଥିଲି, ସେତିକି ହିଁ ସେବା ହୋଇଥିଲା । ପୁଣି ହିସାବ ବୁଝାପଡ଼ିଲା ଯେ ଏମିତି କେତେ ପିତାଜୀ (ବିଗତ ଜନ୍ମରେ) ହୋଇ ସାରିଛନ୍ତି । ଏବେ କ'ଣ କରିବା ? ଜବାବ ମିଳିଲା, 'ଯିଏ ଅଛନ୍ତି, ସେମାନଙ୍କ ସେବା କର ।' ପୁଣି ଯେଉଁମାନେ ଗଲେ ସେମାନେ ଗଲେ । କିନ୍ତୁ ଏବେ ଯେଉଁମାନେ ଅଛନ୍ତି ସେମାନଙ୍କର ସେବା କର । ଯଦି ଏପରି କେହି ଥିବେ ତେବେ ଠିକ, ନଥିବେ ତେବେ ଚିନ୍ତା କରିବ ନାହିଁ । ଏମିତି ତ ବହୁତ ହୋଇଗଲେ । ଯେଉଁଠୁ ଭୁଲିଲ ସେଇଠୁ ପୁଣି ଗଣ । ମାତା-ପିତାଙ୍କ ସେବା ପ୍ରତ୍ୟକ୍ଷ ଅଟେ । ଭଗବାନ କେଉଁଠି ଦେଖା ଯାଉଛନ୍ତି ? ଭଗବାନ ଦେଖାଯାନ୍ତି ନାହିଁ, ମାତା-ପିତା ତ ଦେଖା ଯାଉଛନ୍ତି ।

ଏବେ ବେଶୀରୁ ବେଶୀ ଯଦି କେହି ଦୁଃଖୀ ଅଛନ୍ତି ତେବେ ୬୫ ବର୍ଷ (ଏବଂ ତାହାଠୁ ଅଧିକ) ବୟସର ଲୋକମାନେ ବହୁତ ଦୁଃଖୀ ଅଛନ୍ତି । କିନ୍ତୁ ସେମାନେ କହିବେ କାହାକୁ ? ପିଲାମାନେ ଧ୍ୟାନ ଦେଉନାହାନ୍ତି । ଫାଟ ପଡ଼ି ଯାଇଛି ପୁରୁଣା ଏବଂ ନୂଆ ଜମାନା ମଧ୍ୟରେ । ବୁଢ଼ା ପୁରୁଣା ଜମାନା ଛାଡ଼େ ନାହିଁ, ମାଡ଼ ଖାଏ ତଥାପି ଛାଡ଼େ ନାହିଁ ।

**ପ୍ରଶ୍ନକର୍ତ୍ତା :** ୬୫ ବର୍ଷ ହେବା ପରେ ସମସ୍ତଙ୍କର ଏହି ଦଶା ହୁଏ ନା ?

**ଦାଦାଶ୍ରୀ :** ହଁ, ଏପରି ହିଁ ହାଲତ । ଏହି କୁ ଏହି ହାଲ୍ ! ଏଣୁ ଏହି ଜମାନାରେ ବାସ୍ତବରେ କରିବା ଯୋଗ୍ୟ କ'ଣ ? କେଉଁ ଜାଗାରେ ଯଦି ଏହି ବୟୋଜ୍ୟେଷ୍ଠ ମାନଙ୍କ ପାଇଁ ରହିବାର ସ୍ଥାନ ତିଆରି କରିଥିବ ତେବେ ବହୁତ ଭଲ । ଏପରି ମୁଁ ଭାବିଥିଲି । ପୁଣି ମୁଁ ଭାବିଲି ଯେ ଏପରି କିଛି କରିଥିବେ, ତେବେ ପ୍ରଥମେ

ଆମର ଏ ଜ୍ଞାନ ଦେଇ ଦିଏ, ପୁଣି ସେମାନଙ୍କର ଖାଇବା-ପିଇବାର ବ୍ୟବସ୍ଥା ତ, ଅନ୍ୟ ସାମାଜିକ ସଂସ୍ଥାମାନଙ୍କୁ ଦେଇ ଦେବା ତେବେ ମଧ୍ଯ ଚଳିବ। କିନ୍ତୁ ଜ୍ଞାନ ଦେଇ ଦେଇଥିବ ଆଉ ପୁଣି ଦର୍ଶନ କରିବେ ତେବେ ମଧ୍ଯ କାମ ହେବ! ଏହି ଜ୍ଞାନ ଦେଇ ଦେବା ତେବେ ବିଚରାଙ୍କୁ ଶାନ୍ତି ରହିବ, ଅନ୍ୟଥା କେଉଁ ଆଧାରରେ ଶାନ୍ତି ରହିବ?

ଏବେ ତୁମ ଘରେ ପିଲାମାନଙ୍କ ମଧ୍ଯରେ ସଂସ୍କାର କିପରି ପଡ଼ିବ? ତୁମେ ତୁମ ମାତା-ପିତାଙ୍କୁ ନମସ୍କାର କର। ଏତେ ଅଧିକ ବୟସରେ ତୁମ ବାଳ ଧଳା ହେବା ପରେ ମଧ୍ଯ ତୁମେ ତୁମ ମାତା ପିତାଙ୍କୁ ପ୍ରଣାମ କରୁଥିବ ତେବେ ପିଲାଙ୍କ ମନରେ ବି ଏପରି ବିଚାର ଆସିବ ନା ଯେ ପିତାଜୀ ଲାଭ ନେଉଛନ୍ତି ତେବେ ଆମେ କାହିଁକି ନ ନେବା? ପୁଣି ତୁମ ପାଦ ଛୁଇଁବେ ନା ନାହିଁ?

**ପ୍ରଶ୍ନକର୍ତ୍ତା :** ଆଜିକାଲିର ପିଲାମାନେ ମାତା-ପିତାଙ୍କ ପାଦ ଛୁଉଁ ନାହାନ୍ତି। ସେମାନଙ୍କୁ ସଙ୍କୋଚ ହେଉଛି।

**ଦାଦାଶ୍ରୀ :** ଏପରି ଅଟେ, ମାତା-ପିତାଙ୍କ ପାଦ କାହିଁକି ଛୁଉଁ ନାହାନ୍ତି? ସେ ପିଲାମାନେ ମାତା-ପିତାଙ୍କ ଦୁର୍ବଳତା (ଭୁଲ, ଦୋଷ) ଦେଖି ନିଅନ୍ତି, ଏଣୁ 'ପାଦ ଛୁଇଁବା ଯୋଗ୍ୟ ନୁହନ୍ତି' ମନରେ ଏପରି ମାନନ୍ତି, ସେଥିପାଇଁ ପାଦ ଛୁଅନ୍ତି ନାହିଁ। ଯଦି ତାଙ୍କଠାରେ ଆଚାର(ଆଚରଣ)-ବିଚାର ଉଚ୍ଚ, ବେଷ୍ଟ ଲାଗିବ, ତେବେ ସର୍ବଦା ପାଦ ଛୁଇଁବେ ନିଶ୍ଚିତ। କିନ୍ତୁ ଆଜିକା ମାତା-ପିତା ତ ପିଲାମାନଙ୍କ ସାମ୍ନାରେ ମଧ୍ଯ ଝଗଡ଼ା କରନ୍ତି। ମାତା-ପିତା ଝଗଡ଼ା କରନ୍ତି ନା ନାହିଁ? ଏବେ ପିଲାମାନଙ୍କ ମନରେ ସେମାନଙ୍କ ପ୍ରତି ଯେଉଁ ଆଦର-ସମ୍ମାନ ଥିବ, ତାହା କେବେ ପର୍ଯ୍ୟନ୍ତ ରହିବ?

ଏହି ସଂସାରରେ ତିନି ଜଣଙ୍କର ମହାନ ଉପକାର ଅଛି। ସେ ଉପକାର ଭୁଲିବା ଭଳି ନୁହେଁ। ମାତା-ପିତା ଏବଂ ଗୁରୁଙ୍କର। ଯେଉଁମାନେ ଆମକୁ ସଠିକ ରାସ୍ତାରେ ଲଗେଇ ଥିବେ, ସେମାନଙ୍କର ଉପକାର ଭୁଲିବା ଭଳି ନୁହେଁ।

**- ଜୟ ସଚ୍ଚିଦାନନ୍ଦ**

# ଶୁଦ୍ଧାତ୍ମାଙ୍କ ପ୍ରତି ପ୍ରାର୍ଥନା

(ପ୍ରତିଦିନ ଥରେ କରନ୍ତୁ)

ହେ ଅନ୍ତର୍ଯ୍ୟାମି ପରମାତ୍ମା! ଆପଣ ପ୍ରତ୍ୟେକ ଜୀବମାତ୍ରରେ ବିରାଜମାନ ଅଛନ୍ତି, ସେହିପରି ମୋ ଭିତରେ ମଧ୍ୟ ବିରାଜମାନ ଅଛନ୍ତି । ଆପଣଙ୍କ ସ୍ୱରୂପ ହିଁ ମୋ ସ୍ୱରୂପ ଅଟେ । ମୋ ସ୍ୱରୂପ ଶୁଦ୍ଧାତ୍ମା ଅଟେ ।

ହେ ଶୁଦ୍ଧାତ୍ମା ଭଗବାନ ! ମୁଁ ଆପଣଙ୍କୁ ଅଭେଦ ଭାବରେ ଅତ୍ୟନ୍ତ ଭକ୍ତିପୂର୍ବକ ନମସ୍କାର କରୁଛି ।

ଅଜ୍ଞାନତାବଶ ମୁଁ ଯେଉଁ ଯେଉଁ ** ଦୋଷ କରିଛି, ସେ ସମସ୍ତ ଦୋଷକୁ ଆପଣଙ୍କ ସମ୍ମୁଖରେ ପ୍ରକାଶ କରୁଛି । ତାହାର ହୃଦୟପୂର୍ବକ ବହୁତ ପଶ୍ଚାତାପ କରୁଛି ଏବଂ ଆପଣଙ୍କ ଠାରେ କ୍ଷମା-ପ୍ରାର୍ଥନା କରୁଛି । ହେ ପ୍ରଭୁ ! ମୋତେ କ୍ଷମା କରନ୍ତୁ, କ୍ଷମା କରନ୍ତୁ, କ୍ଷମା କରନ୍ତୁ ଆଉ ପୁଣି କେବେ ଏପରି ଦୋଷ ନ କରେ, ଏପରି ଆପଣ ମୋତେ ଶକ୍ତି ଦିଅନ୍ତୁ, ଶକ୍ତି ଦିଅନ୍ତୁ, ଶକ୍ତି ଦିଅନ୍ତୁ ।

ହେ ଶୁଦ୍ଧାତ୍ମା ଭଗବାନ ! ଆପଣ ଏପରି କୃପା କରନ୍ତୁ ଯେପରି ମୋତେ ଭେଦଭାବ ଛୁଟିଯାଉ ଏବଂ ଅଭେଦ ସ୍ୱରୂପ ପ୍ରାପ୍ତ ହେଉ । ମୁଁ ଆପଣଙ୍କ ସହ ଅଭେଦ ସ୍ୱରୂପରେ ତନ୍ମୟାକାର ରହେ ।

** ଯେଉଁ ଯେଉଁ ଦୋଷ ହୋଇଛି, ସେ ସବୁକୁ ମନରେ ପ୍ରକାଶ କରନ୍ତୁ ।



## ପ୍ରତିକ୍ରମଣ ବିଧି

ପ୍ରତ୍ୟକ୍ଷ ଦାଦା ଭଗବାନଙ୍କ ସାକ୍ଷୀରେ, ଦେହଧାରୀ ......... (ଯାହା ପ୍ରତି ଦୋଷ ହୋଇଥିବ, ସେ ବ୍ୟକ୍ତିର ନାମ)ର ମନ-ବଚନ-କାୟାର ଯୋଗ, ଭାବକର୍ମ-ଦ୍ରବ୍ୟକର୍ମ-ନୋକର୍ମରୁ ଭିନ୍ନ, ଏପରି ହେ ଶୁଦ୍ଧାତ୍ମା ଭଗବାନ ! ଆପଣଙ୍କ ସାକ୍ଷୀରେ, ଆଜି ଦିନ ପର୍ଯ୍ୟନ୍ତ ମୋ ଦ୍ୱାରା ଯେଉଁ ଯେଉଁ ** ଦୋଷ ହୋଇଛି, ସେ ସବୁ ପାଇଁ ମୁଁ କ୍ଷମା ମାଗୁଛି, ହୃଦୟପୂର୍ବକ ବହୁତ ପଶ୍ଚାତାପ କରୁଛି । ମୋତେ କ୍ଷମା କରନ୍ତୁ ଏବଂ ପୁଣି ଏପରି ଦୋଷ କେବେ ମଧ୍ୟ କରିବି ନାହିଁ, ଏପରି ଦୃଢ଼ ନିଶ୍ଚୟ କରୁଛି । ସେଥିପାଇଁ ମୋତେ ପରମ ଶକ୍ତି ଦିଅନ୍ତୁ ।

** କ୍ରୋଧ-ମାନ-ମାୟା-ଲୋଭ, ବିଷୟ-ବିକାର, କଷାୟ ଆଦି ଦ୍ୱାରା ସେହି ବ୍ୟକ୍ତିକୁ ଯାହା ବି ଦୁଃଖ ପହଞ୍ଚାଇ ଥିବ, ସେ ଦୋଷଗୁଡ଼ିକୁ ମନରେ ସ୍ମରଣ କରନ୍ତୁ ।

## दादा भगवान फाउन्डेशन के द्वारा प्रकाशित पुस्तकें

१. ज्ञानी पुरुष की पहचान
२. सर्व दु :खो से मुक्ति
३. कर्म का सिद्धांत
४. आत्मबोध
५. मैं कौन हूँ ?
६.वर्तमान तीर्थकंर श्री सीमंधर स्वामी
७.भुगते उसी की भूल
८. एडजस्ट एवरीव्हेयर
९. टकराव टालिए
१०. हुआ सो न्याय
११. चिंता
१२. क्रोध
१३. प्रतिक्रमण
१४. दादा भगवान कौन ?
१५. पैसों का व्यवहार
१६. अंत : करण का स्वरुप
१७. जगत कर्ता
१८. त्रिमंत्र
१९. भावना से सुधरे जन्मोंजन्म
२०. माता-पिता और बच्चों का व्यवहार
२१. प्रेम
२२. समझ से प्राप्त ब्रह्मचर्य
२३. दान
२४. मानव धर्म
२५. सेवा-परोपकार
२६. मृत्यु समय, पहले और पश्चात
२७. निजदोष दर्शन से...निर्दोष
२८. पति-पत्नि का दिव्य व्यवहार
२९. क्लेश रहित जीवन
३०. गुरु-शिष्य
३१. अहिंसा
३२. सत्य-असत्य के रहस्य
३३. चमत्कार
३४. पाप-पुण्य
३५. वाणी,व्यवहार में...
३६. कर्म का विज्ञान
३७. आप्तवाणी - १
३८. आप्तवाणी - २
३९. आप्तवाणी - ३
४०. आप्तवाणी - ४
४१. आप्तवाणी - ५
४२. आप्तवाणी - ६
४३. आप्तवाणी - ७
४४. आप्तवाणी - ८
४५.आप्तवाणी - ९
४६.आप्तवाणी - १३(पूर्वार्ध)
४७.आप्तवाणी - १३(उत्तरार्ध)
४५. समझ से प्राप्त ब्रह्मचर्य (पूर्वार्ध-उत्तरार्ध)

★ ଦାଦା ଭଗବାନ ଫାଉଣ୍ଡେଶନ ଦ୍ୱାରା ଗୁଜରାଟୀ ଭାଷାରେ ବି ଅନେକ ପୁସ୍ତକ ପ୍ରକାଶିତ ହୋଇଛି । ୱେବସାଇଟ୍ **www.dadabhagwan.org** ରେ ମଧ୍ୟ ଆପଣ ଏ ସମସ୍ତ ପୁସ୍ତକ ପ୍ରାପ୍ତ କରିପାରିବେ ।

★ଦାଦା ଭଗବାନ ଫାଉଣ୍ଡେଶନ ଦ୍ୱାରା ପ୍ରତ୍ୟେକ ମାସ ହିନ୍ଦୀ, ଗୁଜରାଟୀ ତଥା ଇଂରାଜୀ ଭାଷାରେ "ଦାଦାବାଣୀ" ମାଗାଜିନ୍ ପ୍ରକାଶିତ ହେଉଛି ।

**ଓଡ଼ିଆ ପୁସ୍ତକ :**

୧. ଆତ୍ମସାକ୍ଷାତ୍କାର
୨. ଘର୍ଷଣ ଟାଳନ୍ତୁ
୩. ମୁଁ କିଏ ?
୪. ଏଡ଼ଜଷ୍ଟ ଏଭ୍ରିହ୍ୱେୟାର
୫. ଚିନ୍ତା
୬. ମାନବ ଧର୍ମ
୭. କ୍ରୋଧ
୮. ଯାହା ହେଲା ତାହା ନ୍ୟାୟ
୯. ମୃତ୍ୟୁ ସମୟରେ, ପୂର୍ବରୁ ଏବଂ ପରେ
୧୦. ଯିଏ ଭୋଗେ ତା'ର ଭୁଲ
୧୧. ସେବା ପରୋପକାର
୧୨. ମାତା-ପିତା ଏବଂ ପିଲାଙ୍କ ବ୍ୟବହାର
୧୩. ପ୍ରତିକ୍ରମଣ

## ପ୍ରାପ୍ତିସ୍ଥାନ

### ଦାଦା ଭଗବାନ ପରିବାର

ଅଡ଼ାଲଜ : **ତ୍ରିମନ୍ଦିର,** ସୀମନ୍ଧର ସିଟୀ, ଅହମଦାବାଦ-କଲୋଲ ହାଇୱେ, ପୋଷ୍ଟ-ଅଡ଼ାଲଜ, ଜିଲ୍ଲା-ଗାନ୍ଧୀନଗର, ଗୁଜରାଟ-୩୮୨୪୨୧,ଫୋନ-(୦୭୯)୩୯୮୩୦୧୦୦

ରାଜକୋଟ : **ତ୍ରିମନ୍ଦିର,** ଅହମଦାବାଦ-ରାଜକୋଟ ହାଇୱେ, ତରଘଡ଼ିୟା ଚୋକଡ଼ି(ସର୍କଲ), ପୋଷ୍ଟ-ମାଲିୟାସଣ,ଜିଲ୍ଲା-ରାଜକୋଟ, ଫୋନ-୯୯୨୪୩୪୩୪୭୮

ଭୁଜ୍ : **ତ୍ରିମନ୍ଦିର,** ହିଲ୍ ଗାର୍ଡେନ ପଛ,ଏୟାରପୋର୍ଟ ରୋଡ଼.ଫୋନ-(୦୨୮୩୨) ୨୯୦୧୨୩

ଅଞ୍ଜାର : **ତ୍ରିମନ୍ଦିର,** ଅଞ୍ଜାର-ମୁନ୍ଦ୍ର ରୋଡ,ସୀନୋଗ୍ରା ପାଟୀୟା ପାଖ,ସୀନୋଗ୍ରା ଗାଁ, ତା.-ଅଞ୍ଜାର,ଫୋନ-୯୯୨୪୩୪୬୬୨୨

ମୋର୍‌ବୀ : **ତ୍ରିମନ୍ଦିର,** ମୋରବୀ-ନବଲଖି ହାଇୱେ, ପୋ:ଜୟପୁର, ଜିଲ୍ଲା-ରାଜକୋଟ, ଫୋନ-(୦୨୮୨୨)୨୯୭୦୯୭

ସୁରେନ୍ଦ୍ରନଗର : **ତ୍ରିମନ୍ଦିର,** ସୁରେନ୍ଦ୍ରନଗର-ରାଜକୋଟ ହାଇୱେ, ଲୋକବିଦ୍ୟାଳୟ ପାଖ, ମୂଳି ରୋଡ, ୯୭୩୭୦୪୮୩୨୨

ଅମ୍‌ରେଲୀ : **ତ୍ରିମନ୍ଦିର,** ଲିଲିୟା ରୋଡ, ବାଇପାସ ଚୋକଡି, ଖାରାବାଡି, ୯୯୨୪୩୪୪୪୬୦

ଗୋଧ୍ରା : **ତ୍ରିମନ୍ଦିର,** ଭାମେୟା ଗାଁ, ଏଫ ସି ଆଇ ଗୋଡାଉନ୍ ସାମନା, ଗୋଧ୍ରା । (ଜି-ପଞ୍ଚମହାଲ) ଫୋନ-(୦୨୬୭୨) ୨୬୨୩୦୦

ବଡ଼ୋଦରା : ବାବରୀୟା କଲେଜ ପାଖ,ବଡ଼ୋଦରା-ସୁରଟ ହାଇୱେ,NH-8, ବରଣାମା ଗାଁ. ଫୋନ-୯୫୭୪୦୦୧୫୫୭

ଅହମଦାବାଦ : **ଦାଦା ଦର୍ଶନ,** ୫, ମମତା ପାର୍କ ସୋସାଇଟୀ, ନବଗୁଜରାଟ କୋଲେଜ ପାଖ, ଉସ୍ମାନପୁର,ଅହମଦାବାଦ-୩୮୦୦୧୪,ଫୋନ-(୦୭୯) ୨୭୫୪୦୪୦୮

ବଡ଼ୋଦରା : ଦାଦା ମନ୍ଦିର, ୧୭, ମାମା କି ପୋଲ-ମୁହଲ୍ଲା, ରାବପୁରା ପୋଲିସ ଷ୍ଟେସନ ପାଖ, ସଲାଟୱାଡ଼ା, ବଡ଼ୋଦରା,ଫୋନ-୯୯୨୪୩୪୩୩୩୫

---

| | | | |
|---|---|---|---|
| ମୁମ୍ବାଇ | : ୯୩୨୩୫୨୮୯୦୧ | ଦିଲ୍ଲୀ | : ୯୮୧୦୦୦୯୮୫୬୪ |
| କୋଲକତା | : ୯୮୩୦୦୯୩୨୩୦ | ଚେନ୍ନାଇ | : ୯୩୮୦୧୫୯୯୫୭ |
| ଜୟପୁର | : ୯୩୫୧୪୦୮୨୮୫ | ଭୋପାଲ୍ | : ୯୪୨୫୦୨୪୪୦୫ |
| ଇନ୍ଦୋର | : ୯୦୩୯୯୩୬୧୭୩ | ଜବଲପୁର | : ୯୪୨୫୧୬୦୪୨୮ |
| ରାୟପୁର | : ୯୩୨୯୬୪୪୪୩୩ | ଭିଲାଇ | : ୯୮୨୭୪୮୧୩୩୬ |
| ପାଟନା | : ୭୩୫୨୭୨୩୧୩୨ | ଅମରାବତୀ | : ୯୪୨୨୯୧୫୦୬୪ |
| ବାଙ୍ଗାଲୋର | : ୯୫୯୦୯୭୯୦୯୯ | ହାଇଦ୍ରାବାଦ | : ୯୯୮୯୮୭୭୭୮୬ |
| ପୁନେ | : ୯୪୨୨୬୬୦୪୯୭ | ଜଲନ୍ଧର | : ୯୮୧୪୦୬୩୦୪୩ |
| ଓଡିଶା | : ୮୭୬୩୦୭୩୧୧୧ | | |

---

**U.S.A.: DBVI, Tel . :**+1 877-505-DADA (3232)
**Email :** info@us.dadabhagwan.org

| | | | |
|---|---|---|---|
| **U.K. :** | +44 330-111-DADA (3232) | **UAE** | : +971 557316937 |
| **Kenya :** | +254 722 722 063 | **Singapore** | : +65 81129229 |
| **Australia :** | +61 421127947 | **New Zealand** | : +64 21 0376434 |

**Website : www.dadabhagwan.org**
**Email : info@dadabhagwan.org**



## ଗାଳିକରି ନୁହେଁ, ପ୍ରେମରେ ସୁଧାର

ମା-ବାପା ପିଲାମାନଙ୍କୁ ସୁଧାରିବାକୁ ଯାଇ ସବୁ ଫ୍ରାକ୍‌ଚର କରିପକାନ୍ତି । ଆମକୁ ପିଲାମାନଙ୍କ ପାଇଁ ଭାବ କରିଚାଲିବାର ଅଛି ଯେ ପିଲାଙ୍କୁ ସଦ୍‌ବୁଦ୍ଧି ପ୍ରାପ୍ତ ହେଉ । ଏପରି କରୁ କରୁ ଦିନେ ତାହାର ପ୍ରଭାବ ନ ପଡ଼ି ରୁହେ ନାହିଁ । ସେମାନେ ତ ଧୀରେ ଧୀରେ ବୁଝିବେ । ତୁମେ ଭାବନା କରିଚାଲ । ତାଙ୍କ ଉପରେ ଜବରଦସ୍ତି କରିବ ତେବେ ସେମାନେ ଓଲଟା ଚାଲିବେ । ଆଉ ପିଲାଙ୍କୁ କେବେ ମାରିବ ନାହିଁ । କିଛି ଭୁଲ-ଭାଲ ହୁଏ ତେବେ ମୁଣ୍ଡରେ ହାତ ବୁଲାଇ ତାଙ୍କୁ ବୁଝାଇବ ନିଶ୍ଚୟ । ପ୍ରେମ ଦେବା ତେବେ ପିଲା ସମଝଦାର ହୁଏ, ତୁରନ୍ତ ବୁଝିଯାଏ । ତାତ୍ପର୍ଯ୍ୟ ଏହା ଯେ ଏହି ସଂସାର ଯେମିତି-ସେମିତି ପୁରା କରିନେବା ପରି ଅଟେ ।

-ଦାଦାଶ୍ରୀ




dadabhagwan.org


ISBN 978-93-87551-38-1

Printed in India

Price ₹40